

## ବାଣୀ ବଲ୍ଲରୀ

**ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ କବିତା,**
**ବାଳକବାଳିକା ଓ ତରୁଣତରୁଣୀଙ୍କ ଆମୋଦ ଓ ଶିକ୍ଷା ପାଇଁ**

## ଗଳାର ଗଳ୍ପ ମୋର 1

ତୁଳୀର ତଳ୍ପେ
କଳାର କଳ୍ପେ
ଜ୍ୱାଳାର ଜଳ୍ପ
ଗଳାର ଗଳ୍ପ ମୋର
ସବୁ ଝାଡ଼ି ଝୁଡ଼ି
ଯୋଡ଼ି ଧାଡ଼ି ଧାଡ଼ି
ସଜାଡ଼ି ରଖିଛି
ଉଜାଡ଼ି ନୟନ ନୀର ||-୧

(ହେଲେ ଆରେ,)
କଜଳ-ସଜଳା
ଚଳନ-ଚପଳା
କୋମଳ-କମଳା
ଆଲୋ ଆଲୋଳା ଲଳନା
କଲମ ସ୍ୟାହିରେ
ମଲମ କାହିଁ ରେ
ମରମ ଗହୀରେ
ପାରିବ ମାରି ବେଦନା ||-୨

ଏ ଜୀବନ ଗୁଡ଼ି
ଛିଡ଼ାଇ ଦଉଡ଼ି
ଯାଏ ଉଡ଼ି ଉଡ଼ି
ମେଘ ଘଡ଼ ଘଡ଼ି ଦେଶେ
ଘଡ଼ି ଘଡ଼ି ନାଡ଼ି
ଯାଏ ଛାଡ଼ି ଛାଡ଼ି,
ଝଡ଼ି ବରଷାକୁ
ଭରସି ଉଡ଼େ ଆକାଶେ ||-୩

ତୋତେ ଦେଲି ତୋଳି
ଅଲିଅଳି ବାଳୀ
ନୟନ ପୁତ୍ତଳି
ସମ୍ଭାଳି ରଖ ଆଦରେ
ମୋ ହାତ କବିତା
ବ୍ୟଥାତୁରା ଗାଥା
ଥିଲେ ବିଜନତା
ତରାସିବୁ ଥରେ ଥରେ ||-୪

### ଚୟନ 2

ଧନ, ଜ୍ଞାନ, ଯଉବନ, ଏକ କିଛି ଦେବ ଯଦି କେହି
କପାଳ ଲିଖନ ମାତ୍ର ମାଗି ନେଇ ଯିବି ନିଜ ପାଇଁ |
ଭାଗ୍ୟବନ୍ତ ପୁରୁଷଙ୍କ ଶ୍ରୀଚରଣ ପରିଚର୍ଯ୍ୟା ସ୍ଥଳେ
ବୁଦ୍ଧିମନ୍ତ ବିଦୁଷଙ୍କ ସମାଗମ ସତତ ବିହ୍ୱଳେ |

### ଆଃ କି ଜଞ୍ଜାଳ ଦେଲୁ ରେ 3

ଏଡ଼ିକି ଅଝଟ ଝିଅ କେଉଁଠାରେ ଥିଲୁ
କପାଳେ ମୋ ଥିଲା କିସ ମୋ ପାଶେ ଜୁଟିଲୁ
ଏତିକି କହୁଛୁ କଥା, ହଉନି ତୋ ମୁଣ୍ଡ ବ୍ୟଥା?
ଡରୁ ନାହୁଁ ଗୁରୁଜନ ଏଡ଼ିକି ସାହସ,
ଚାହୁଁ ଚାହୁଁ ଜୀବନ ମୋ କରିଦେଲୁ ବିଷ || ୧||
ମୋ ପାଖରୁ ତୋ ଆଣ୍ଟିର ଦୂରଭାଷ ନେଇ
ଏତିକି ମିଛ ମୋ ନାମେ ପାରିଲୁ ତୁ କହି
ଛୋଟ ସାପ ଏତେ ବିଷ -- କାହାକୁ କହିବି କିସ
ଫାନ୍ଦି-ଫୁନ୍ଦି କେମିତି ତୁ କରୁଛୁ ଚୁଗୁଲି
କି ସୁଖ ମିଳୁଛି ତୋତେ ଲଗାଇଲେ କଳି ? || ୨||

କଅଁଳ ତୋ ଟିକି ମୁହଁ, ସତେ କି ସୁନ୍ଦରୀ !
କଳା କଳା ଡୋଳାରେ ତୋ ଭରିଛି ଚାତୁରୀ
ପୂଜା କି ତୁ ପୂଜାଫୁଲ, ମୋ' ଲାଗି ଅମୂଲ-ମୂଲ,
କି ଲଗନେ ପାଇଲି ମୁଁ ତୋତେ ରେ ଚଗଲୀ
କେମିତି ତୋ ବାପାମାଆଙ୍କର ହେଲୁ ଗେଲୀ? || ୩||

ଆସିବୁ ମୋ ଘର ବୋଲି ଦେଇଛୁ ବଚନ
ଆଉ କି ଅଛି ଜଞ୍ଜାଳ ଭାବି କାଟେ ଦିନ
ତୋ ଆଣ୍ଠି ହାତ ତିଆରୀ ଖାଇ ଯାଆ କ୍ଷୀରି ପୁରି
କରନା ଉତ୍ପାତ ଆଉ, ମୋ ସାଥେ ଲାଗନା;
ରେ ଚପଳ ଅଲିଅଳ ଛଇଳ ଲଳନା || ୪||

## କୁକ୍କୁଟର ସ୍ୱନାମ - ୫୬ କୀର୍ତ୍ତନ (ବା ଚିକ୍କେନ୍ - ୫୬) 4



କୁକ୍କୁଟ କୃକଟ ସୁପର୍ଣ୍ଣ ପୁଣି ଅରୁଣଚୂଡ଼ | [୪]
ଆତ୍ମଘୋଷ ଉଷାକଳ ସହିତେ ମୁଁ ସ୍ୱର୍ଣ୍ଣଚୂଡ଼ || -୧ [୩]
ଉଦ୍ରଥ କାହଳ କାଳଜ୍ଞ କାଣୁକ ଚିତ୍ରବାଜ | -- [୫]
କୁଟରୁ ଚରଣାୟୁଧ ମୁଁ କୃକବାକୁ କଳଜ || -୨ [୪]
ତାମ୍ରଚୂଡ଼ ତାମ୍ରଶିଖୀ ମୁଁ ଦୀର୍ଘନାଦ ନନ୍ଦୀକ | -- [୪]
ପୁଚ୍ଛୀ ନଖାୟୁଧ ନଖରାୟୁଧ ମଣିକଣ୍ଠକ || -୩ [୪]
ମଦରାଗ ପୁଣି ତ୍ର୍ୟାହଳ ପୂର୍ଣ୍ଣକ ରସାଖନ | -- [୪]
ନିଶାକର ପ୍ରାତର୍ଣ୍ଣାଦୀ କୁଟରୁ ପୁଷ୍ଟିବର୍ଦ୍ଧନ || -୪ [୪]
ରାତ୍ରିବେଦ ରାତ୍ରିବେଦୀ ମୁଁ ଯାମଘୋଷ ଶୂଳିକ | -- [୪]
ବଚର ବଟର ରୁଦଥ ବିବୃତାକ୍ଷ ସ୍ୱସ୍ତିକ || -୫ [୫]

ରଣାୟୁଧ ଶିଖଣ୍ଡିକ ଶିଖଣ୍ଡୀ ବୋଧି  ନିୟୋଦ୍ଧୃ |      --      [୫]
ପ୍ରକାଶପ୍ରଜ୍ଞାତୃ ମୟୂର ପ୍ରକାଶକପ୍ରଜ୍ଞାତୃ ||      -୬      [୩]
କଳାଧିକ ମହାଯୋଗୀ ମୁଁ ଶିଖୀ ମୁଁ ନିଶାବେଦୀ      --      [୪]
ରଣାୟୁଧ ଶୌଣ୍ଡ ସହିତେ ପୁଣି ମୁଁ ଯାମନାଦୀ  ||  -୭      [୩]
ଏତାଦୃଶ ମୋର ଅନେକ ନାମ ବିଶେଷ ଖ୍ୟାତି |  --
ଶୁଦ୍ଧ ରଖ ଭାଷା,  ବୁଲିବ ପୃଷ୍ଟେ ଦିବସ ରାତି ||   -୮

## ମୃତ୍ୟୁର ବିଳାପ 5

"ଏତେ ସୁକୁମାରୀ    ତନୁମନେ ଗଢ଼ି
କି ଦେଲ ପିତା କରମ,
ପାତକ ପସରା    ଏ କରମେ ଭରା,
ଦିଶେ ନା ତିଳେ ଧରମ ||   -୧-

ସାଜି ପାତକିନୀ    ରହି ଏକାକିନୀ
କି ଭାବେ କାଟିବି ଦିନ,
ମୋତେ ଦେଖି ଜୀବ   ଭୟରେ ଥରିବ,
ଦେବ କି ଫୁଲ-ଚନ୍ଦନ ||   -୨-

ଆଲୁଅ ଅନ୍ଧାର    ଯୁଗ ଯୁଗାନ୍ତର
କିଏ ଥିବ ମୋର ସାଥୀ,
ଦେଖି ନେତ୍ର-ନୀର    ନିତ୍ୟ ନିରନ୍ତର
କି ହେବ ପିତା ମୋ ସ୍ଥିତି ||  -୩-

ନତ କରି ମଥା    ମାଗୁଅଛି ପିତା
ଦିଅ ମୋତେ କର୍ମ ଆନ,
ହେଲେ ହେଁ କଷଣ    ମୃତୁଛି ମୋ ପ୍ରାଣ
କରିବି ଆଜ୍ଞାପାଳନ ||"   -୪-

ଶୁଣି ପ୍ରଜାପିତା କହନ୍ତି, "ଦୁହିତା,
କର ନା ତିଳେ ଭାବନା,
ଆହ୍ଲାଦିନୀ କନ୍ୟା, କିଏ ତୋହ ବିନା
ସାଧିବ ଏଡ଼େ ସାଧନା || -୫-

ଯେତେ ଚରାଚର ନ କରି ବିଚାର
ଚାଲନ୍ତି ବଂଶ ବିସ୍ତାରି,
ବସନ ବ୍ୟସନ ଗ୍ରାସ ହେବ ଶୂନ୍ୟ
ସେ ଗଲେ ଏ ଭାବେ ବଢ଼ି ||-୬-

ସହସ୍ର ବର୍ଷର ତପେ ହୋଇ ପାର
ସେ ଦିନୁ ହେ ଅନୁଭବୀ
କୋମଳା ବାଳିକା ପିତ୍ରାଜ୍ଞାପାଳିକା
କର୍ମରତା ମହାଦେବୀ || -୭-

ହେ କଲ୍ୟାଣୀ ମାତଃ କି ଭାବେ ଏ ସୁତ
କି ସେବା କରିବ କୁହ,
ପୁତ୍ର କରି ମୋତେ ରଖ କେବେ ସାଥେ,
ପୋଛୁଥିବି ତୁମ ଲୁହ || -୮-

## ପ୍ରାଣ ପତି 6

ସାତ ସିନ୍ଧୁ ସାତ ସରିତ ସାତ ସରସୀ ପାରି
ସାତ ମାସ ସାତ ବରଷ ଶେଷ, ଆସୁନ ଫେରି || -୧
ସାତ ସ୍ୱର ସାତ ଆକାଶେ ସାତ ବତାସେ ଉଡ଼ି
ସାତ ତାଳ ସାତ ପାତାଳ ତଳେ ପଡ଼େ ମୋ ଛିଡ଼ି || -୨
ସାତ ଭାସେ ହସି ସପ୍ତାଂଶୁ ରଚେ ସାତ ସପନ
ସାତ କ୍ଷଣ ସେ ତ ରହେ ନା, ସେଠି ଘଟେ ସ୍ଫୋଟନ || -୩
ଶତ ଶତଦଳ ସମର୍ପି ସଦ୍ୟ, ସତୀ କେତନେ;
ସଦ୍ୟସ ଶପଥ ସମ୍ପାଦେ ଉସ୍ର ଶଶୀ କିରଣେ || -୪

ସପତ ବାସର ନିଶୀଥେ ସଂସାଧନେ ଶାଶ୍ୱତ;
ସପ୍ତ ସାମ  ସୁଧା ସୁରେ  ମୋ ସାଥୀ ତୁମେ ସଂଗୀତ || -୫
ସାତ ସୂତି ସାତ ପୁରୁଷ ସାତ କୋଶ ବସତି,
ଶତଶ କରିବେ ସ୍ୱୀକାର ମୁଁ ତୁମ ସତ୍ୟ ସତୀ || - ୬
ସତୀ-ସୀତା-ପତି-ସପତ-ପୋଥି  ନୁହେଁ ମୋ ଗୀତି;
ମୋ ଗୀତ ରଖିଛି ସାଇତି, ନେବେ ମୋ ପ୍ରାଣ ପତି | -୭

## କୁକ୍କୁଟର ଶିକ୍ଷାଦାନ 7



ଦିଶିଲାଣି ନଈ ଆର କୂଳେ
ସହରର ଗହଳ ଚହଳ
ଧୀର ସ୍ଥିର ଥିଲେ ମାଆ କୋଳେ
ସରି ଯିବ ସରିତ ସହଳ || -୧

ଶିଶୁ ଲାଗି କେତେ ଯେ କଷଣ
ଜନନୀଟି ହସି ହସି ସହେ
ବଡ଼ ହେଲେ ହେବା କି ପାଷାଣ,
ଭୁଲି ଯିବା ତାକୁ ସ୍ୱାର୍ଥ ମୋହେ ? -୨

ଜନନୀର ବଢ଼ିଲେ ବୟସ
ଥକି ଯିବ, ହେବ ରୋଗ ବ୍ୟାଧି;
ଖୋଜି ଦେବା ତା ଲାଗି ଆହାର
ଖୋଜି ଆଣି ଦେବା ଅଉଷଧି || -୩

ସାଙ୍ଗ ସାଥୀ ମିଳି ମିଶି ଆମେ
ମଣିଷକୁ ଦେଖାଇବା ରାହା,
ଦେଖାଇବା ଆଚରି କରମେ
ସବୁଠାରୁ ବଡ଼ ନିଜ ମାଆ || -୪

ଏବେ ଯାଇ ସହର ଭିତରେ
ଘୂରି ଘୂରି କରିବା ବୋବାଲ;
କହି ଦେବା ଦୁଆରେ ଦୁଆରେ
ଉଠ ଉଠ ହେଲାଣି ସକାଳ || -୫

ନିତ୍ୟ କର୍ମ ସାରି ବେଗି ବେଗି
ପଢ଼ି ବସ ଧରି ଖାତା ବହି;
ନିଜ ସ୍ଥାନ ବାଛି ନେବା ଲାଗି
ଏବେ ଠାରୁ ପଢ଼ ମନ ଦେଇ || -୬

ମନ ଦେଇ ପଢ଼ିଥିଲେ ଏବେ
ବଡ଼ ହେଲେ ଲେଖିବ କବିତା;
ନ ଢାଳିଲେ ତେଲ ଘିଅ ଲବେ
ଦୀପରେ କି ଜଳିବ ସଳିତା ? -୭

ନ ଜାଣିଲେ ପଣିକିଆ ମାନ
କେହି କେବେ କଷିବ ଗଣିତ ?
ଶବ୍ଦ-ଅର୍ଥ ବ୍ୟାକରଣ ଜ୍ଞାନ-
ବିବର୍ଜିତ ଗଢ଼େ କି ସାହିତ୍ୟ ?? -୮

## କାହା ଦେଇ କଣ ହୁଏ ୫

ଫୁଲ ଅରପଣେ ପୂଜା ହୁଏ ଭାଇ,
ପତରେ ତ ହୁଏ ନାହିଁ |
ମେଘ ବରଷଣେ ଜଳ ଝରିବ କି
ଆକାଶ ପାରିବ ଦେଇ ?

ତାରା କି କାହାକୁ ଶୀତଳତ ଦିଏ,
ଚନ୍ଦ୍ରମା ତା' ଦେବ ସିନା |
ମନ ଦେଲେ ଏକା ସାଥୀ ପାଇ ହୁଏ,
ଅର୍ଥରେ କିଣି ହୁଏ ନା !

## କ୍ଷୁଦ୍ର ମୋର ପରିଚୟ ୨

କରେନା ମୁଁ ଶୌର୍ଯ୍ୟନାଦ କେବେ,
ଭାଷା ଲାଗି ଦେଇନି ଭାଷଣ;
ନିଜ ଛଡ଼ା ଲଢ଼ିନି କା ସାଥେ,
କରି ନାହିଁ ଭାଷା ଆନ୍ଦୋଳନ || -୧
ଭଞ୍ଜକବି ପାଇଁ ଅଛି ଗର୍ବ,
ଗର୍ବ କଲେ କରେ ଏକାନ୍ତରେ;
ଭକ୍ତକବି ଭାଷା ସୁଲଳିତ,
ସେ ଭାଷାକୁ ଉଚ୍ଚାରଣ କରେ || -୨

ଉତ୍କଳୀୟ ବାଣୀର ପୂଜାରୀ,
ପୂଜାର୍ଚ୍ଚନା ହୃଦୟର ଗାଥା;
ସେ ସାଧନା ଲୋଡ଼େ ବିଜନତା,
କେଉଁ କାର୍ଯ୍ୟେ ପ୍ରଚାର ବ୍ୟବସ୍ଥା ? -୩
କୃପାନିଧି ଜଗତ କାରଣ,
ଯଥା ଯୋଗ୍ୟ ଦିଏ କୃପବାରି,
ମାଗେ ମାତ୍ର ମୋ ଶାଦ୍ଧୀମାତାଙ୍କୁ,
ପଡ଼ିଗଲେ ହାତେ ନେବ ଧରି ||-୪

ଏହି ମୋର ସାମାନ୍ୟ କାହାଣୀ,
ଏହି ମୋର କ୍ଷୁଦ୍ର ପରିଚୟ;
ଜୀବନ ବି ସରି ଆସିଲାଣି;
ଲୋଡ଼ା ନାହିଁ ଭାଗ୍ୟ ଅଭ୍ୟୁଦୟ ||-୫

## ଦୁଇ ଶୂଦ୍ରମୁନି ଭାଇ 10

ହାସ୍ପାତାଲ୍ ଆରପାରେ
ରାଜପଥୁଁ ଅଳ୍ପ ଦୂରେ
ବସିଛି ଚାହିଁଛ ଥରେ
ମହା ଯତୀ କିଏ ?
କି ବା ରାତି କି ଦିବସ
ଛ'ଅ ଋତୁ ବାର ମାସ
ଗ୍ରୀଷ୍ମ ଢାକର ବତାସ
ସହି ବସି ଥାଏ | -୧-

ଯମ ସମ ସାମ୍ୟ-ବାଦ,
ନାହିଁ ଉଚ୍ଚ-ନୀଚ ଭେଦ,
ସାଧକ ସଦା ନିର୍ବେଦ,

ଅଟଳ ଅଚର;
ସମସ୍ତଙ୍କୁ କରି କୋଳ
ପେଟ ଚିରି ଖେଳେ ଖେଳ
ପାଲଟି ସେ କଳିକାଳ
ନୃସିଂହାବତାର ‌| -୨-
ଯମପୁର ଯିବା ବେଳେ
ଆଗ ଏ ତପସ୍ୱୀ ତୁଲେ
କପାଳରେ ଲେଖାଥିଲେ
ଆସନ୍ତି ଅନେକେ;
ବିଶ୍ରାମ ନେଇ ତା ପାଖେ
ଆଗକୁ ଯାଆନ୍ତି ଲୋକେ,
ଶୋଇ ଆଗ ଏହା ପାଖେ,
ଧୋଇ ପାପ ଟିକେ | -୩-
ଏଇ ହାସ୍ପାତାଲ୍ ଧାରେ
ରାଜପଥୁଁ ଅଳ୍ପ ଦୂରେ
ବସିଛି ଦେଖିଛ ଥରେ
ମୌନୀ ମୁନି କିଏ ? ....
ଧରି ଏ ଅଗ୍ରଜ ନୀତି
ବସିଅଛି ଏହା କତି
ଆଉ ଜଣେ ସ୍ଥିର ମତି:
ଅନୁଜ ଏହାର |
ତେଜି ବିକାର ଅସୂୟା
ଧରି ଚଣ୍ଡାଳର କାୟା
ସହର ଯାକ ଅଳିଆ
କରେ ପରିଷ୍କାର | -୪-

ଅଛୁଆଁ ଏ ସମସ୍ତଙ୍କ,
ଯିଏ ଯେବେ ଯାଏ ପାଖ
ରୁମାଲରେ ଚାପି ନାକ

ଯାଇ ଥା'ନ୍ତି ଜନ ।
ଯେତେ ଯା’ ଅଛି ଅମେଧ
ସେହି ସବୁ ଏହା ଖାଦ୍ୟ
ନିତି ଖାଇ ପୁଣି ସଦ୍ୟ
କରେ ସେ ବମନ ।  -୫-

ଘରୁ ଘର ଯେତେ ମଳ
ଧରି ନିଏ ନିଜ କୋଳ
ଶୂଦ୍ରଗୁଣେ ମାତୃପଣେ
ସେବାବ୍ରତୀ ସିଏ ।
ଏ ଦୁଇ ଭାଇଙ୍କୁ ଜାଣ ?
ନ ଜାଣ ତ ଦୁହେଁ ଶୁଣ:
ପୋଷ୍ଟମୋଟେମ୍ ଘର ଆଉ
ଡଷ୍ଟବିନ୍ ଗୋଟିଏ ।  -୬-

ହାସ୍ପାତାଲ ପର ପାରେ
ରାଜପଥୁଁ ଅଳ୍ପ ଦୂରେ
ଚିହ୍ନିଛ କି ବସିଛନ୍ତି
ମହା ଯତୀ ଦୁହେଁ ....

## କବିତା -୨-  11

କବିପ୍ରିୟେ କାବ୍ୟାମୃତେ  ଆର୍ଦ୍ରଚକ୍ଷୁଲୋତକଲେଖନି !
ଅଦ୍ୟନ୍ତରହିତା ମାତଃ ବିଶ୍ୱଜନହୃଦୟବାସିନି !  -୧-
ଦୟାମୟି ଆଶିର୍ମୟି ସୁଲଳିତେ ହେ ବିଶ୍ୱଜନନି !
ଧରାବକ୍ଷେ ବ୍ୟଭିଚାରେ ତୁମେ ଯେବେ ହୁଅ ଉନ୍ମାଦିନୀ,  -୨-
ବିପ୍ଲବଦୁନ୍ଦୁଭି ବାଜେ କମ୍ପି ଉଠେ ସମଗ୍ର ମେଦିନୀ,
ଔଦ୍ଧତ୍ୟ ବିନାଶେ ସାଜ ଅବିଳମ୍ବେ ଶାନ୍ତା ଆହ୍ଲାଦିନୀ ।  -୩-
ବ୍ରହ୍ମାଣ୍ଡମହିମାଙ୍କାତେ ! ତୁମେ ସାଧ୍ୱୀ ତୁମେ ତପସ୍ୱିନୀ,

ଭୋଗ ତୁମେ ଯୋଗ ତୁମେ, ତୁମେ ଭୋକ୍ତ୍ରୀ ତୁମେ ହିଁ ଯୋଗିନୀ | -୪-

## ବନ୍ଧୁ ହାତରେ ମୋ ବରଗଛ ଖବର ପଠେଇଛି 12

ଶତାବ୍ଦୀରୁ ଅଧିଲୀଟିଏ
ପଛରେ ଛାଡ଼ି ଯାଇଛି ସିଏ,
ନିଅ ରେ ଭାଇ ନିଅ,
ଆଣିଛ ପରା କେମେରା, ତହିଁ ଚିତ୍ର ଭରି ଦିଅ |
ଦେଖେଇ ଦେବ ଫେରିଲେ ଯାଇ --
"ତୋ' ବରଗଛ ହେଇ ରେ ହେଇ |"
ଦେଖିଲେ ତାର ଆଖିରୁ ଟୋପେ ପଡ଼ିବ ଝରି ଲୁହ;
କାହିଁକି ଜାଣ ? କହୁଛି ଶୁଣ –
ସେଇ ମୋ ଗେଲା ପୁଅ ||୧||

ସାଥୀ ସଙ୍ଗାତ ଜଣେ ଜଣେ ତ
ଗଲେଣି ତା'ର ମଶାଣି ପଥ --
କହିବ ସବୁ କଥା,
ହାତରେ ହାତ ରଖି କହିବ, ଦେବନି ବେଶି ବ୍ୟଥା |

କହିବ ତାକୁ, କାଢ଼ି ସେ ବେଳ
ବୁଲି ଦେଖିବ ତା' ନଦୀ କୂଳ;
ସେ ଦିନ ପରି ଆଜି ବି ତା'ର ଚାଲିଛି ଦେଇ ଜଳ;
କହିବ କିଏ ଜଳ କି ସିଏ
ଅଶ୍ରୁ ଅବିରଳ ||୨||

ବିଦ୍ୟାଳୟ-ବଣ ଗହଳେ,
ଗ୍ରୀଷମ କାଳେ ମୋ ଛାଇ ତଳେ
ସିଏ -- କାଟିଛି ଖରା ବେଳ;
ମୋ' ଡାଳ ପରେ ଚଢ଼ିଛି କେତେ

କୁଣ୍ଢାଇ ତାକୁ ଧରିଛି ହାତେ,
ଆଉ -- ଥରେ କି କେବେ ଆସିବ ନାହିଁ,
ମାଡ଼ିବ ନାହିଁ ଏ ଗଛ ଛାଇ,
ଦେଖିବ ନାହିଁ ଜୀବନେ ଆଉ କରଞ୍ଜ ମାଳମାଳ ?
ବରଗଛ ମୁଁ କରଞ୍ଜିଆର
କା' ଲାଗି ତେବେ କଲି ବାହାର
ମୋର -- ଏତିକି ଓହଳ ?
ତାକୁ -- କହିବ ଯାଇ, "ବୁଲି ଆ ଭାଇ,
ଥରେ -- ଝୁଲି ଯା ସହଳ" ||୩||

## ଭାବ ମାତ୍ରେ କବିତା ? 13

ହେଉ ସେ ଗଣିତ ଶାସ୍ତ୍ର, ବସ୍ତୁ, ରସାୟନ |
ଅର୍ଥନୀତି, ଇତିହାସ, କି ପରିସଂଖ୍ୟାନ || -୧-
ହେଉ ଉପଚାରବିଦ୍ୟା, ଆକାଶବିଜ୍ଞାନ |
ଲେଖକର ଭାବ ବୁଝେ ପାଠକରତନ || -୨-
ମୂକ ମଧ ଭାବେ କିଛି, ପ୍ରକାଶ ବି କରେ |
ବୁଝନ୍ତି ବୁଝିବା ଜନେ ସବୁ ଇଙ୍ଗିତରେ || -୩-
ଶିଶୁ କ୍ରନ୍ଦନର ଭାବ ବୁଝେ ତାର ମାତା |
ବସ୍ସା ଯେବେ 'ହମ୍ବା' କରେ ବୁଝଇ ଗୋମାତା || -୪-
ବେଙ୍ଗ ରାବ ଶୁଣି ଭାବ ବୁଝଇ ବେଙ୍ଗୁଲି |
ଏ ସବୁ କବିତା ନାମେ ଖ୍ୟାତ କି ତା' ବୋଲି ? -୫-
ଗଦ୍ୟ ଓ ପଦ୍ୟ ମଧ୍ୟରେ କି ଅଛି ପ୍ରଭେଦ |
ପଚାରିଲେ କ୍ରୋଧୀ କବି ଦିଅନ୍ତି ପ୍ରମାଦ || -୬-
ଏଣିକି ଏ ପ୍ରଶ୍ନ ଆଉ ପଚାରିବି ନାହିଁ |
ମୁଁ ତ ଲେଖେ ମୋ କବିତା ମୋର ନିଜ ପାଇଁ || -୭-
ଆଉ କେହି ଗୁଣଗ୍ରାହୀ ଆଦରିଲେ ଯେବେ |
ସେ ଜଣଙ୍କ ପାଇଁ ମଧ ଲେଖିଥିଲି ଭାବେ || -୮-
କି ପାଇବି ହେଲେ ଲେଖା ମୋର ପ୍ରସଂଶିତା |

ନିଜେ ଯେବେ ଜାଣୁଥିବି -- ଏ ନୁହେଁ କବିତା || -୯-
ମାତ୍ର ଭାବ ପ୍ରକାଶନେ ହେଲେ ସେ କବିତା |
କିମ୍ବାଁ କବି ରାତ୍ରିଦୀପେ ଜାଳୁଛ ସଳିତା ? -୧୦-

## ଆତ୍ମୀୟତା-ଉପହାର 14

କଅଁଳ ବୟସ,
ଲାଗିଥାଏ ହସ,
ଶୀତକାଳେ ହୋଲି,
ଜହ୍ନ ରାଇଜରେ ପୁଚି;
ଆଷାଢ଼େ ଦୀବାଲୀ,
ଚପଳ ମନରେ
କେତେ ପରକାରେ
କଳ୍ପନା ଥାଏ ଲୁଚି | -୧

ବୟସ ବଢ଼ିବ, ଚପଳତା ଯିବ,
ଧୀରେ ଧୀରେ କାହିଁ
ଅପସରି ଯିବ ପୁଚି,
ଅନେକ ପରବ ହଜି ହଜି ଯିବ,
ଘର ପାଖେ ମେଢ଼ ଥାଇ ମନ ହେବ,
ତିନି ଥର ଲେଖା ଛ'ଅ ପଡ଼ି ଗଲା,
ଗୋଟି କି ଚାଲିବି,
ମୋର—
ସବୁ ଖେଳ ଗଲା ପଚି;
ଛୁଆଙ୍କର ଏବେ ପଡ଼ିଛି ପାଳକ,
ଖାଲି ତାଙ୍କ ଗୋଟି ଯାଏ ପାଚି ! -୨

ସଂସାର ଜଳେ କେ କାହିଁ ଭାସିବ,
ପେଷି ଚାଲି ଯିବ ଯନ୍ତ୍ର-ଜଗତ ଦେଶେ;

ମନେ ହେବ ଖାଲି ଛାଡ଼ି ମୁଁ ଆସିଲି.
ସରଗଠୁ ବଳି ପରିଜନ ମୋର,
ସତେ କେଉଁ ପରବାସେ |                    -୩

ଏବେ ତୁ ଭାବୁଛୁ ମାୟା ବନ୍ଧନ
ଆସିଗଲା ଅଜାଣତେ;
କିଏ କାହୁଁ ଜଣେ ଆସିଲା ଜୀବନେ,
ନ ଥାଇ କାରଣ ତା'ର ଚିନ୍ତନ
ମନେ ଆସେ ଅବିରତେ |                    - ୪

ଯା' କଥା କହୁଛୁ ତାହା ସାଥେ ତୋର
ନାହିଁ କିଛି ଦିଆ ନିଆ;
ନାହିଁ ତୋର କିଛି ପାଇବାର ଆଶା,
ସିଏ ବି ରଖିନି ତିଳେ ହେଁ ପୀପାସା,
କେତେ ବେଳେ ତୋର ମନ ଭାଙ୍ଗି ଗଲେ
ସେ'ଲାଗେ ଭରସା  ସହା |                    -୫
ତୋର ସେନେହ ପାଏ ସେ ବୋଲି,
କଥା ପଦେ କହି କାନ ପାରି ଦିଏ
ଅଧା ଶୁଣି ଅଧା ବୁଝିଲେ ବି କହେ
ଛୁଆଟା ତୁ'ଡ ରେ,
ନିହାତି ଗେଲେଇ, ଓଲି |                    -୬

ସ୍ୱାର୍ଥ ରହିତ ଏଇ ବନ୍ଧନ,
ତେଣୁ ରଖେ କରି ସମ୍ମୋହନ,
ମାଗିଲେ ଖୋଜିଲେ କାନ୍ଦିଲେ ନ ମିଳେ,
ଏମିତି ଶରଧା ହୁଏ ନା ଗଢ଼ିଲେ,
ହାଟ ବଜାରରେ ଯୋଡ଼େ ନା, ମିଳେ ନା,
ନୁହଁ ନୁହଁ ଇଏ –
ଏମିତି ସେମିତି କଥା;

ଜାଣ, ଏଇଟା ଆତ୍ମୀୟତା !!! -୭
ମନରୁ ଏହାକୁ କାଢ଼ି ଦେବା ଲାଗି
ଲୋଡ଼ା ନାହିଁ ଉପଚାର;
ବିଶ୍ୱବିଧାତା ଦେଇଛି ଦୁହିଙ୍କୁ
ଏକ ଆନେ ଉପହାର !
ତାକୁ ଆଦର ଯତନ କର !! -୮

## ବଞ୍ଚି ରୁହ ବଞ୍ଚିବାକୁ ଦିଅ 15

ନିଜେ ବଞ୍ଚି ରହିଥାଅ
ଆନେ ବଞ୍ଚିବାକୁ ଦିଅ:
ନିତି କହି ଚାଲିଥାଅ
କରି ଜପାମାଳି |
ପଦେ ପଦେ ପ୍ରତିବାଦ
କେତେ ବାଦ ବିସମ୍ବାଦ
ଦେଶ-ଜାତି-ଧର୍ମ-ଯୁଦ୍ଧ
ଆଳେ କର କଳି || ୧ ||

ଅନ୍ୟର ବିନାଶ ବିନା
ଅଛି କି ବଞ୍ଚିବା ମନା
ଅଦ୍ଭୁତ ତୁମ ଭାବନା
ହେ ସଭ୍ୟ ମାନବ !
ଅଣୁ-ଅସ୍ତ୍ର, ଶୂନ୍ୟ-ଶସ୍ତ୍ର --
ଇଏ କି ଅହିଂସା-ମନ୍ତ୍ର,
ଏ ଧ୍ୱଂସ ତାଣ୍ଡବ ତନ୍ତ୍ର
କି କଲ୍ୟାଣ ଦେବ ? ୨ ||

ଶିକ୍ଷା ଦୀକ୍ଷା ଜାତି ଧର୍ମ
ନୀତି ବେଦ ଶ୍ରୁତି ହୀନ
ଦେଖ ସଂପୂର୍ଣ୍ଣ ଉଲଗ୍ନ

ହିଂସ୍ର ଜନ୍ତୁଟିଏ ।
ଯେତେ ସେ ଲୋଡ଼େ ଆହାର
ସେତିକି କରେ ଶିକାର
ନ ପାଇଲେ ନିରାହାର
ବସି ରହି ଥାଏ ।। ୩ ।।

ନାହିଁ ସଭ୍ୟତା ସଂସ୍କୃତି
ଜନ ମାନ କି ସଂପତ୍ତି
ଖୋଜେ ନା ସେ ଯଶଃ ଖ୍ୟାତି
କେବେ କାଣିଚାଏ ।
ନାହିଁ ତାର ଈର୍ଷ୍ୟା ଦ୍ୱେଷ
ସହି ରହି କ୍ଷୁଧା କ୍ଳେଶ
ତୁମକୁ ଦେଖ ମଣିଷ
ବଞ୍ଚିବାକୁ ଦିଏ ।। ୪ ।।

## ମୋତେ କୁହ ନାହିଁ କବି 16

ସାହସ କରିନି
କେବେ ମୁଁ ନିଜକୁ
କବି ବୋଲେଇବା ପାଇଁ ।
ଶରଧାରେ ମୋତେ
ଯେ ଯାହା କହିଲେ
ଶୁଣେ ସିନା ମଥା ନଇଁ ।।

ଖୋଲି କହି ଦିଏ
ନିଜେ ଯା ଭାବୁଛି,
ମୋର ନିଜ ପରିଚୟ ।
କରୁଛି କବିତା
ଲେଖିବା ପ୍ରୟାସ,

ବେଳେ ବେଳେ ଅଭିନୟ ||

ଏହି ମୋ ଅନ୍ତର କଥା |
ଉତ୍କଳ ଭୂମିରେ
ଏତେ କବି ଥାଉଁ,
ମୋତେ
କବି କହିବାଟା ବୃଥା ||

କବି ବୋଲି ଜମା
କୁହନା କୁହନା
ଦିଅନା ଦିଅନା ଲାଜ |
କଦବା ଧାଡ଼ିଏ
ଲେଖିଦେଲେ କିଏ,
କବି ହେବା କି ସହଜ ?

ଉପନାମ ମୋର
ନୁହେଁ ମୋ ନିଜର,
ସେ ତ କୁଳ ପରିଚୟ,
ନାମ ଉପନାମ
ନ ଆଣୁ ବିଭ୍ରମ,
ଛୋଟ ମୋର ଅନୁନୟ ||

## କବି ଓ କବିପତ୍ନୀ 17

କବିହୃଦଗାଥା କବିତା ଏକା ପାରିବ ବୁଝି |
ତୁମେ କି ବୁଝିବ ବନିତା କବି-କାମିନୀ ସାଜି || ୧
ଦୂର ଜଳଧରେ ବାସବଧନୁ ଦିଶେ ମଞ୍ଜୁଳ |
ଉଦଧି ଉଦକେ ଉଦନେ ସେ କି ହେବ ଉଚ୍ଛଳ ? || ୨
ସୁମନ ସୁବାସେ ସୁଦୂର ଦେଶୁ ଆସେ ଚଞ୍ଚରୀ |
ସେ ସରାଗ ସତେ ବୁଝିବ ଆଲମ୍ବିନୀ ବଲ୍ଲରୀ ? || ୩

ମୃଦୁଳା ଅବଳା ଲଳନା ଲିପ୍ସା-ଜିଗୀସାମୟି !
ରଙ୍ଗିଣୀ ସଙ୍ଗିନୀ ଶ୍ଳକ୍ଷଣା ହୁଅ ପିପ୍ରୀଷା ବହି || ୪

ଟୀକା:-- ବାସବଧନୁ=ଇନ୍ଦ୍ରଧନୁ; ଉଦକ=ଜଳ; ଉଦନ=ବୁଡ଼ିବା; ଚଞ୍ଚରୀ=ମଧୁମକ୍ଷୀ; ଆଲମ୍ବିନୀ=ଆଶ୍ରିତା; ବଲ୍ଲରୀ=ଲତା; ଜିଗୀଷା=(ବିବାଦରେ) ଜୟ କରିବାର ଇଚ୍ଛା; ଶ୍ଳକ୍ଷଣ=କୋମଳ; ପିପ୍ରୀଷା=ପ୍ରୀତିର ଆଶା;.

## ବର ଯାଚନା 18

ବ୍ୟାସଦେବ ପାଦ- ଧୂଳି ଶିରେ ବୋଳି
ଚିତାଗ୍ନିରେ ଜଳି ପାରନ୍ତି ଯେବେ
ପ୍ରାପ୍ତପ୍ରାପ୍ତବ୍ୟ ମୁଁ କୃତ ମୋ କର୍ତ୍ତବ୍ୟ
ଜ୍ଞାତ ମୋ ଜ୍ଞାତବ୍ୟ ମଣନ୍ତି ଭବେ || -୧

ବୁଦ୍ଧ ଭଗବାନ ବଚନ ସ୍ପନ୍ଦନ
ଆଜି ବି ପବନ ରଖିଛି ଧରି;
ଏ ଅଧମ କର୍ଣ୍ଣ କିଞ୍ଚିତ ଶ୍ରବଣ
ସେ ସୁଧା-ବଚନ ପାରନ୍ତା କରି || -୨

କେତେ ମହାଯତୀ ଯାହା ପୁଣ୍ୟଗୀତି
ଏ ବିଶ୍ୱଭାରତୀ ଆନନ୍ଦେ ବୋଲେ
କି ତାଙ୍କ ମନନ, ଅମୃତ କଥନ !
କରନ୍ତି ଚିନ୍ତନ ସାମର୍ଥ୍ୟ ଥିଲେ || -୩

ଦିଅ ପ୍ରାଣପତି ଏ ଅଧମମତି
ଏତିକି ଶକତି ବ୍ୟାକୁଳେ ମାଗେ;
ହେ ବିଶ୍ୱ-ଆଧାର କୃପା ପାରାବାର
ଦିଅ ଏହି ବର ଅଭାଗା ଭାଗ୍ୟେ || -୪

## ଫେରି ଯାଅ ପାରା ଯୋଡ଼ିକ 19

ନୁଆଣିଆ ଖରା ହେଲାଣି
ବେଳ ଯିବ ରେ ବୁଡ଼ି
ସୁନ୍ଦରିଆ ପାରା ଯୋଡ଼ିକ
କିମ୍ପାଁ ଯାଉନ ଉଡ଼ି | -1

ଅନ୍ଧାର ହେଲେ କି ପାରିବ
ଉଡ଼ି, ପାଇବ ବସା,
ସଞ୍ଜ ହେଲା, ଗଲେ ଘଡ଼ିଏ
ହେବ ଗହନ ନିଶା | -2

ଏବେ କିମ୍ପାଁ ପାରା ଯୋଡ଼ିକ
ମୋର ପିଣ୍ଡାରେ ବସ
କି ଖୋଇବି ନାହିଁ ମୋ ଘରେ
ଦୁଧ ନଡ଼ିଆ ରସ | -3

ପାଖେ ନାହିଁ ପଦ୍ମ ପୋଖରୀ
କାହୁଁ ପି'ଇବ ପାଣି
ଶୋଇବାକୁ ନାହିଁ ବଜାର
ଯିବି ଖଟୁଲୀ କିଣି | -4

ହାଣ୍ଡି ନାହିଁ ଟାଙ୍ଗି ରାତିକ
ସାରା ଦେବି ଲୁଚେଇ
ନିଶବଦେ ଭୂଆଁ ଆସିବ
ସେ ଟା ବଡ଼ ଓଲେଇ | -5

ନାତି ନାତୁଣୀ ତ ନାହାନ୍ତି
ପାଶେ ଶୁଣିବେ କଥା
ଘୁଟୁରୁ ଘୁଟୁରୁ କରୁଛ
କିଆଁ ଟୁଙ୍ଗାରି ମଥା | **-6**

ନାହାନ୍ତି କି ତୁମ ବାପ ମା
ଅବା ଭାଇ ଭଉଣୀ
ଖୋଜି ସେ ତୁମକୁ କାନ୍ଦିବେ
ପାରୁ ନାହଁ କି ଜାଣି | **-7**

ଛୋଟିଆ ରାତିଟା କଟିଲେ
ଆସିଯିବ ପ୍ରଭାତ
ବସା ପାଖେ ଖୋଜି କାନ୍ଦିବେ
ତୁମ ସାଥୀ ସଙ୍ଗାତ | **-8**

ଜନନୀ ତୁମର ଓପାସେ
ଥିବେ ଝୁରି ଝୁରିକା
ବାପା ବସିଥିବେ କପାଳେ
ହାତ ମାରି ମାରିକା | **-9**

ବାହୁଡ଼ି ସହଳ ନ  ଯିବ
ଯେବେ ବୁଡ଼ିବ ବେଳ
ବଡ଼ ହୁଅ ଜାଣି ଯିବ ରେ
ପିତା ମାତା ବିକଳ | **-10**

ଫେରି ଯାଅ ଫେରି ଯାଅ ରେ
ଏବେ ନିଜର ଘର
ସଞ୍ଜ ତ ଯାଉଛି ବୁଡ଼ି ରେ,
ଘୋଟି ଯିବ ଅନ୍ଧାର | **-11**

*V vallari*

## ଧନ୍ୟ ସେ ବୟୋବୃଦ୍ଧ 20

ଡାକିଲେ ଆରକ୍ଷୀମୁଖ୍ୟ ବୟୋବୃଦ୍ଧ ସଭା ।
ବୀରଦର୍ପେ ବୃଦ୍ଧକୁଳ ହେଲେ ତହିଁ ଉଭା ।। ୧ ।।

ଉତ୍ତରୀ ଆରକ୍ଷୀମୁଖ୍ୟ ଉତ୍କଳୀୟ ଭାଷା ।
କହି କଲେ ସମ୍ଭାଷଣ ସଞ୍ଚରିଲେ ଆଶା ।। ୨ ।।

କିଏ ବା ଶୁଣିଲେ ଅଧା କିଏ ବା ସମ୍ପୂର୍ଣ୍ଣ ।
ସୁଯୋଗ ମିଳନ୍ତେ କଲେ ସ୍ୱାର୍ଥୋପସ୍ଥାପନ ।। ୩ ।।

ବଢ଼ି ଚାଲିଅଛି ଯେଣୁ ଇନ୍ଧନର ମୂଲ୍ୟ ।
ଚାରିଚକ୍ରଯାନେ ଆସି ସଭିଏଁ ବିକଳ ।। ୪ ।।

ଜଳଯୋଗ ପୋଟଳିକା ଥିଲା ବ୍ୟବସ୍ଥିତ ।
ଜଣେ ଜଣେ ଚାରି ପାଞ୍ଚ କଲେ ଆତ୍ମସାତ ।। ୫ ।।

ମାଗି ମାଗି ନେଲେ କିଏ, ନ କହି କେ ନେଲେ
ଅଭାବର ଭାବ ସତେ କେତେ ମହୀ ତଳେ ।। ୬ ।।

ଦେଖି ସ୍ୱତଃ ମନେ ମୋର ଆସିଲା ସ୍ମରଣ ।
ପଢିଥିଲି -- କର ବାବୁ ଲୋଭ ସମ୍ବରଣ ।। ୭ ।।

ବୃଦ୍ଧକୁଳ ! କହିଥିଲେ ଶ୍ରୀ ମଧୁସୂଦନ ।
ପଢି ନାହଁ, ଶୁଣି ନାହଁ ? ଶୁଣ ଏବେ ଶୁଣ । ୮ ।।

"ବୃଦ୍ଧ ନୁହେଁ ସେହି ଜନ ଶୁକ୍ଳକେଶ ଅଟେ ଯାର ଶିର ।
ଯୌବନେ ଯେ ଜ୍ଞାନେ ରତ ବୁଧେ ତାକୁ ବୋଲନ୍ତି ସ୍ଥବିର" ।। ୯ ।।

ମୁଁ ପୁଣି କହୁଛି, ଶୁଣ ଧନାଢ୍ୟ ଦରିଦ୍ର ।
ନ ଶିଖନ୍ତୁ ଯୁବା କେବେ ତୁମଠୁ ଚରିତ୍ର ।। ୧୦ ।।

## ବ୍ୟକ୍ତିଗତ: କବି 21

କହୁଛି ଅନ୍ତର ଖୋଲି ଗଭୀର ବେଦନା ।
ବାରଂବାର ମୋତେ ଯାହା ଦେଇଛି ଲାଞ୍ଛନା ।। -୧
ଲୁଚାଇ ରଖୁନି କିଛି କହୁଛି ସତରେ ।
କବିତା ବୋଲି ଯା' ମାନ୍ୟ ମୋ କ୍ଷୁଦ୍ର ମତରେ ।। -୨
କବିତାର ପରିଚୟ ଶ୍ରୁତି-ମଧୁରତା ।
ତାହା ବିନା କାହାକୁ ମୁଁ କହେନା କବିତା ।। -୩
କଣ୍ଟକ-ଅରଣ୍ୟେ ମାତ୍ର ସେ କେତେଟା ଫୁଲ ।
କଣ୍ଟାରେ କି ଲୋଡ଼ା -- ବିଚାରିବି ମନ୍ଦ, ଭଲ ? -୪
କିଶୋର-କିଶୋରୀ ଜଣେ ଅଧେ ମୋ ସଂବିଧେ ।
ଶିଖନ୍ତି ବାଣୀ-ସାଧନ ଛୋଟ ଏ ସଂବିଦେ ।। -୫

## ବିଛୁଆତି 22



କଥା ରଖିବୁ କି ନାହିଁ,
ସତେ ନେବୁନି ବୁଲାଇ ?
ମୋତେ -- କେବେ ଆଉ ଚିହ୍ନିବୁ କେଜାଣି;

ବେଗି ଆସିବୁ କି ନେବି ଟାଣି ଟାଣି ??　　　　-୧

ତିନିଚକ-ସାଇକଲ,
ମୁଁ ବସୁଚି ତାକୁ ଠେଲ,
ଚାଲ ପଳେଇବା ଘର ଥାଉ ମେଲା,
ଗଲେ ଦେଖାଇବି କେଡ଼େ ମୁଁ ଚଗଲା |　　　　-୨

ଚାଲ ପାର୍କ୍‌ରେ ବସିବା;
ପାରା ଚଢ଼େଇ ଦେଖିବା;
ସେଠି ମାଉସୀର ମୋଡ଼ି ଦେଇ ନାକ;
ଧାଇଁ ପଳାଇବି, ଶୁଣିବିନି ଡାକ |　　　　-୩

ମୋତେ ମିବାଇଲ୍ ଟା ଦେବୁ,
ଲାଇନ୍ ଯୋଡ଼ି ଧରାଇବୁ,
କଥା ହେବି ସେଠୁ ଅଜା ସାଥେ ବସି;
ଲାଇନ୍ କଟିଲେ ମୋବାଇଲ୍ ଦେବି ଠେସି | -୪

ଦେ' ମୁଁ ପିନ୍ଧିବି ତୋ ଚୁଡ଼ି;
ପିନ୍ଧା ବପାଙ୍କର ଘଡ଼ି;
କି ନା ଭାଙ୍ଗିବି ଯା' ରଖିଛୁ ସାଇତି ?
ତୁ କି ଜାଣିନୁ ମୁଁ କେଡ଼େ ବିଛୁଆତି ??　　　-୫ -

## ଔଦ୍ଧତ୍ୟ ମୋର ପରିଚୟ　　　23

ପରମାତ୍ମନ୍ ! କୁହ ତୁମେ
　　କେଉଁ ଧର୍ମ କର ଆଚରଣ |
ହିନ୍ଦୁ ତୁମେ, ମୁସଲ୍‌ମାନ୍,
　　ଇହୁଦୀ କି ବୌଦ୍ଧ, ଖ୍ରୀଷ୍ଟିୟାନ || -୧-||

ଅନାଦି କାଳରୁ ତୁମେ

ଯୁଗେ ଯୁଗେ ଦିଅ ଆଦ୍ୟଜ୍ଞାନ |
ନିଜ ସମ୍ପ୍ରଦାୟ କିନ୍ତୁ
ସଭିଙ୍କଠୁ ରଖିଛ ଗୋପନ || -୨-||

କୃପାସିନ୍ଧୁ ନାମ ଧରି
ଏକ ବିନ୍ଦୁ ନ ରଖିଲ କୃପା |
ନିଜ ନୀତି ନିୟମକୁ
ଶାସ୍ତ୍ରଠୁ ବି ରଖିଛ ଅଛପା || -୩-||

ସବୁ ଧର୍ମ-ଅବଲମ୍ବୀ
କହୁଛନ୍ତି ଈଶ୍ୱର ତାଙ୍କର |
ଭିନ୍ନ ମତେ ଉପାସନା
କରିବାଟା ମହା ପାପାଚାର || -୪-||

ଅକର୍ମ ବି କର୍ମ ବୋଲି
କହିଅଛ ତୁମରି ଶ୍ରୀମୁଖେ |
ତୁମ ନୀରବତା କିନ୍ତୁ
ମାନବକୁ ରଖିଅଛି ଦୁଃଖେ ||-୫-||

ଜାଣିଲେ ତୁମର ନୀତି
ସଭିଏଁ ତ ତାହାକୁ ପାଳନ୍ତେ |
କି ଆନନ୍ଦ ପାଅ ତୁମେ
ଧର୍ମ ନାମେ ଏତେ ରକ୍ତପାତେ ||-୬-||

ଉତ୍ତର ପାଇବା ଯାଏ
ପଚାରିବି ତୁମ ସମ୍ପ୍ରଦାୟ |
ମଲେ ବି ଛାଡ଼ିବି ନାହିଁ,
ଔଦ୍ଧତ୍ୟ ହିଁ ମୋର ପରିଚୟ || -୭-||

## ଫେରି ଆସ ସଖା 24



ସଞ୍ଜବତୀ ଶିଖା ଲିଭି ଲିଭି ଯାଏ
ପାହିବା ଆଗରୁ ରାତି;
ହେଲେ ହେଁ ପ୍ରଦୀପ ଜାଳି ମୁଁ ଚାଲିଛି
ତୁମ ଲାଗି ନିତି ନିତି ! -୧

ମନ କଥା ମୋର ମନରେ ମାରିଛି
ଖୋଲି କହି ନାହିଁ ଦିନେ;
ନିରୋଳାରେ ଜାଳି ଆଶାର ଦୀପାଳୀ
ଚାଲିଛି ଜଳି ମଉନେ |-୨

ଆପତ୍ତି ଓଜର ନାହିଁ ତ ମୋହର
ନାହିଁ କିଛି ଅଭିଯୋଗ;
ତୁମେ ଆସ ଫେରି ଏ ଆଖିର ବାରି
ତୁମ ଲାଗି ମୁଁ ପିଉଛି |-୩

ଫେରି ଆସ ସାଥୀ, ଏକା ଏକା ରାତି
କଟୁଛି ମୋ ଉଜାଗରେ;
ତୋଫା ହେଲେ ଦିନ ଦେଖେ ଏ ନୟନ
ପାଦ ଚିହ୍ନ ଥରେ ଥରେ |-୪

ସେ ଦୂର ଅତୀତ ତୁମ ଯିବା ପଥ
ଚାହିଁ ବି ପାଏ ନାଁ ଖୋଜି;
ଯେବେ ଫିକା ଫିକା ମନେ ପଡ଼େ ଏକା

ଲାଗେ ସତେ ଅବା ଆଜି |-୫

ଆସିବ ସହଳ ଢାଳି ଅଶ୍ରୁ ଜଳ
ରହିଥିବି କେତେ ଏକା ?
ଦୀର୍ଘ ଏ ପ୍ରତୀକ୍ଷା ଘେନୁ ଯବନିକା
ଆସ ମୋ ଜୀବନ ସଖା |-୬

## ନରରୂପେ ଅଭିଷେକ 25

କିଏ ମୋତେ କହୁଥିଲେ ଦେଖ –
ଭାଗ୍ୟଦେବୀଙ୍କର ଏକ ବିନଷ୍ଟ ତନୟ,
ଆଉ କିଏ କହୁଥିଲେ ଇଏ –
ନିଜ ଧୀମତ୍ତାର କରେ ପୂର୍ଣ୍ଣ ଅବକ୍ଷୟ || -୧-

କେତେ ଖ୍ୟାତି ପାରିଥାନ୍ତା ପାଇ –
ନେଇଥିଲେ ଟିକେ ଯତ୍ନ ନିଜସ୍ୱ ମେଧାର,
କରିବ ଏ ନିର୍ଦ୍ଧନ ଜୀବନେ –
ପୂର୍ବ-ଉତ୍ତର-ପୁରୁଷ-କୁଟୁମ୍ବ ଉଦ୍ଧାର ? -୨-

ଶୁଭାକାଙ୍କ୍ଷୀ ବୁଝେଇଲେ କେତେ –
ସମାଜେ କରି ନେ ବାବୁ ନିଜର ପ୍ରତିଷ୍ଠା,
ଶୁଣି ମଧ ବିଦ୍ୟାଳୟ ପାଠ୍ୟେ –
ତିଳେମାତ୍ର କେବେ କିନ୍ତୁ ନ ରଖିଲି ନିଷ୍ଠା | -୩-

ନୀରବେ ଉଦ୍ଘୋଷ କଲି ମନେ –
ମାନିବିନି କାହା ନୀତି କାହାରି ଆଦର୍ଶ,
ଭିକ୍ଷା ମାଗି କାହାରି ଦର୍ଶନ –
ବଞ୍ଚିବିନି, ହେବି ନାହିଁ କାହା କ୍ରୀତଦାସ || ୪-

ଜନ୍ମିଛି ମଣିଷ ହେଇ, ଯଦି –
ମଣିଷ ମୁଁ; ସ୍ୱତନ୍ତ୍ର ମୁଁ ଖୋଜିବି ଅମୃତ,
ନିଜେ ଯେବେ ନ ପାରେ ତା କରି –
କି ବା ଲାଭ ରହିଲେ ମୁଁ ମୃତ କି ଜୀବିତ? -୫-

ଧରି ସେହି ଟାଣପଣ ମୋର –
ଦୁଃଖ-ଦୈନ୍ୟ, ଉଚ୍ଚ-ମାନ ପାଇଛି ଅନେକ,
ହେଇନି ମୁଁ ଦେବତା, ନୃପତି –
ନରରୂପେ କରିଛି ମୁଁ ନିଜ ଅଭିଷେକ | -୬-

## ଆତ୍ମକଥା ଅହଂ-ଗାଥା 26

ଆତ୍ମକଥା – ଭାଷାନ୍ତରେ ଅହଂ-ଗାଥା ମୋର
ଅବ୍ୟକ୍ତରୁ ବ୍ୟକ୍ତ ହେବ, କଲା ହାହାକାର | -୧
ନିଜକୁ ଧିକ୍କାରି ପୁଣି ଲେଖୁଛି କବିତା
ସାହିତ୍ୟର ଶ୍ରୋତା! ଶୁଣ ମୋ ମନର ବ୍ୟଥା | -୨
ହେଉ ଗଦ୍ୟ ଅବା ପଦ୍ୟ କବିତ୍ୱ ସମସ୍ତ
ବି-ଅର୍ଥ, ନ ହେଲେ ତହୁଁ ଅପରର ହିତ | -୩
ବିଦୀର୍ଣ୍ଣ ପୁସ୍ତକ-ପଟ୍ଟ ଥାଆନ୍ତା ତା ସ୍ଥାନେ
କି କଲ୍ୟାଣ ହେଲା ତାକୁ ଲେଖି ଅଭିମାନେ ? -୪
ଦେହ ଦାହ୍ୟ; ତ୍ୟାଜ୍ୟ ମନ- ବୁଦ୍ଧି-ଅହଂକାର;
ଏଥୁ ମୁକ୍ତି ପାଇବି କି, ଲାଗୁଛି ଆତୁର | -୫
ଧନ, ମାନ, ବୁଦ୍ଧି, ଜ୍ଞାନ ଗର୍ବର କାରଣ;
ନିର୍ଦ୍ଧନତା, ମୂଢପଣ ସହିତେ ଅଜ୍ଞାନ - -୬
ସବୁଥିରେ ଅଲକ୍ଷ୍ୟରେ ପଶିଯାଏ ଅହମ୍,
ଦୁର୍ବଳ ମୁଁ, ଦିଅ ମୋତେ ଶ୍ରୀହରି ଶରଣମ୍ | -୭

## ଆସିବ ସତେ ? 27

ସରି'ତ ରତିର ତାରେ
ସାଗ'ର ଗର୍ଜନ ଗୀରେ
ଘନ – ବଉଦ ଉଦକେ ଖରେ ଶୁଣେ,
ଦୂରୁ' ଦାରୁଣ କଟାକ୍ଷି
ଲାଜ'ରା-କଜରା-ଆକ୍ଷି
ନିଶ୍ଚେ – ଆସିବ ଉଷସୀ ଘେନି ଦିନେ || -୧

ଆଶା' ଆରତରତନ
ପୁରୁ'ଣା ପରାଣଧନ,
ତାକୁ -- ଧରି ଧୀରଯେ ଅଛି ଜୀବନ;
ଉଷା' ଈଷତ ଆଲୋକେ,
ପ୍ରଦୋ'ଷେ ଦୂଷିତ ଶୋକେ;
ଥାଏ – ନିଶିଥେ ନିଶତ ମାତ୍ର ମନ || -୨

ତୋ ଲା'ଗି ତରୁଣୀ ରାଣୀ
ମଳ'ୟ ମାଳବ ଗୁଣି
ଜାଡ଼େ – ବଡ଼ଦାଣ୍ଡ ଦଣ୍ଡେ ନ ହୁଡ଼ିଲି;
କି ଭ'ଳି ଭୁଲିବି ବାଳା,
ଭାଷି'ଲୁ ପୀୟୂଷବୋଳା --
ଦିନେ – ଆସିବି ରଥରେ ଥରେ ବୋଲି | -୩

ବିତି' ଯାଏ ଯାତଯୁଥ;
ନଗ'ର, ଖର୍ବଟ, ବଟ,
ପୀଠ – ଆପଣ, ବିପଣ, ଘାଟ ସାକ୍ଷୀ:
ତୋର' ଆଶ୍ୱାସେ ବିଶ୍ୱାସି
ବେନି' ନୟନ ଉନ୍ମେଷି
ଖୋଜେ – ଆସିଥିବ ନିଶ୍ଚେ ଚାରୁ-ଆକ୍ଷି || -୪

ନଦୀ[ର] ସତ୍ୟ-ଗାଥାର ଗୁଞ୍ଜରଣରେ, ସାଗରର ଗର୍ଜନ ବାଣୀରେ, ଘନ ମେଘର ଜଳ[ଧାରାର] ପ୍ରଖରତାରେ ଶୁଣେ: ଦୂରରୁ ଅନେକ କଟାକ୍ଷ କରି, ଲାଜରା-କଜରା-ଆକ୍ଷିଯୁକ୍ତା ନିଶ୍ଚେ [ସାଥୀରେ] ଉଷସୀ [ପ୍ରଭାତ/ଉଷା] [ର ଆଲୋକ] ଘେନି ଅସିବ | [-୧] ଆଶା ହିଁ ଆର୍ତ୍ତର ଜୀବନ [ଓ] [ମୋର] ପ୍ରାଚୀନ ପ୍ରାଣ-ସମ୍ପଦ; ତାକୁ ଧରି ଧୈର୍ଯ୍ୟରେ ଜୀବନ ରଖିଛି |ଉଷାର ସ୍ୱଳ୍ପ ଆଲୋକରେ, [ଓ] ଦିବସରେ ଶୋକରେ କଳୁଷିତ, [ମୋ'] ମନ କିନ୍ତୁ ରାତିରେ [ଅନ୍ଧାରରେ] କେବଳ ଉଜ୍ଜ୍ୱଳ ଥାଏ | [-୨] ହେ ତରୁଣୀ ରାଣୀ ! ତୋ ଲାଗି ମଳୟର ମାଳବ [ରାଗ] ଗୁଣୁ ଗୁଣୁ କରି, ଶୀତରେ ବି ବଡ଼ଦାଣ୍ଡ ଛାଡ଼ି ଯାଇ ନାହିଁ, [କାରଣ] କେମିତି ଭୁଲିବି ବାଳା ! ଯେ, ତୁ ଅମୃତବଚନ କହିଥିଲୁ କି, ରଥରେ ଥରେ ଆସିବି ବୋଲି ? [-୩] [ରଥ] ଯାତ୍ରାଗୁଡ଼ିକ ବିତି ଯାଉଛି; ନଗର ଗ୍ରାମର ବଟ [ବୃକ୍ଷ], [ଧର୍ମ] ପୀଠ, ରାଜଧାନୀ, ବାଣିଜ୍ୟସ୍ଥଳ, ଜଳାଶୟ] ଘାଟ, ଏ ସମସ୍ତେ ସାକ୍ଷୀ [ଯେ] ତୋର ଆଶ୍ୱାସନ କୁ ବିଶ୍ୱାସ କରି ଦୁଇ ଆଖି ବିସ୍ଫାରିତ ରଖି, [ମୁଁ] ଖୋଜୁଥାଏ, ଚାରୁ-ଅକ୍ଷି ନିଶ୍ଚେ ଆସିଥିବ [ବୋଲି] | [-୪]

## ଆଧୁନିକ ଲୋକଗୀତ: କଲେଜ୍ ଝିଅଙ୍କୁ ପଦେ 28

**କି ଲାଗି ଅବଳା ଲଳନା**
**ଖେଳ ଏତେ ବେଳରେ,**
**ପିତାମାତା ଥିବେ ଭାଳେଣି**
**କରି, ଫେରି ଯା' ଘରେ | 1**

**ଗୁରୁଜନ କଥା ଶୁଣୁନ**
**ତୁମ ସାହସ ବଡ଼,**
**କହି ଦେବି ଯାଇ ଘରେ ଯେ**
**ମାତା ମାରିବେ ମାଡ଼ | 2**
**ମାତା ମାଡ଼ ଜାଣି ଫୁଲ ଫୋ-**
**ପଡ଼ା, ଡରୁନ ଜମା,**
**ବଡ଼ ଭାଇ ଯେବେ ଜାଣିବ**
**ଯିବ କୁଆଡ଼େ ବାମା ? 3**

**ନାନୀ ଭିଣେଇ ବି ଜାଣିବେ,**
**ଶୁଣି କରିବେ ଗାଳି;**
**କେତେ ମିଛ ତାଙ୍କୁ କହିବ**

ଭାଳି ରଖିଥା ବାଳୀ | 4

ପାମ୍ପଡ଼ ଖିଆ ତ ସରିଲା
ପୁଣି ଖାଇବ କିସ ?
ଭାଇନା ପୋକୁଡ଼ି ଛାଣୁଛି,
ଖାଇ ସହଳ ଖସ | 5

ହରବର ଗିଳି ଦେବନି,
ଯିବ ତଣ୍ଟିରେ ଲାଗି,
ପାଣି ନାହିଁ ପାଖେ, କାଢ଼ିବ
ବାଲ୍ଟି ଦଉଡ଼ି ମାଗି | 6

ଖାଇ ଦେଇ ଫେରି ଯାଅ ରେ
ପାଦ ଝ'ଅଟ ଚାଳି
ତଳକୁ ଅନେଇ  ଚାଲିବ,
କଣ୍ଟା ନ ଯାଉ ଗଳି | 7

ଘର ପାଖ ହେଲେ ଟିକିଏ
ନେବ ସମ୍ଭାଳି ହସ,
ଶୁଣିଲେ ବକିବ  ବୁଢ଼ି ମା
ମରହଟ୍ଟି ମଣିଷ | 8

ବହି ରଖି ଗୋଡ଼ ଧୋଇବ
ଖାଇ ଦେଖିବ ଟିଭି,
ଏମେର୍ଜେନ୍ସି ରଖି ପଢ଼ିବ,
ଯାଏ ଆଲୁଅ ଲିଭି | 9

ମୋବାଇଲ୍ ଲୁଚେଇ ବସିବ
ନାହିଁ ଫେସ୍ବୁକ୍ ଖୋଲି,
ପରୀକ୍ଷାରେ ଭଲ ନ କଲେ

ଯିବ ମୁହଁଟି ଫୁଲି | **10**

ଘଣ୍ଟାରୁ ଅଧିକା ବସିବ
ନାହିଁ ନେଟ୍ ପାଖରେ,
କା' ନାମେ ଚୁଗୁଲି କରିବ
ନାହିଁ ମୋବାଇଲିରେ | **11**

ରାତି ବେଶି ଜମା କରିବ
ନାହିଁ ଶୋଇବ ଖାଇ,
ଡେରିରେ ଶୋଇଲେ ସକାଳୁ
ନିଦ ଭାଙ୍ଗିବ ନାହିଁ | **12**

## ପ୍ରୀତି ମାନେ ନାହିଁ ଭୀତି 29



ପ୍ରୀତି ମାନେ ନାହିଁ ଭୀତି,
ଭାତି ଅବା ରାତି;
ରୀତି, ନୀତି, ତିଥି କି ବା
ମାନେନା ଅରାତି || -୧

ମତ୍ସର ନଗର ଖରେ
କରି ପରିହାର;
ଭୂଧର ଗିରିକନ୍ଦରେ
କରିବା ବିହାର || -୨

## କବି ଓ କବିତା 30

ବିଜ୍ଞାନ ଚର୍ଚ୍ଚାରେ ଅନେକ:
ସେଥିରୁ କେତେ ବୈଜ୍ଞାନିକ ? -୧
କରନ୍ତି ଯେତେ ବିସମ୍ବାଦ
ସର୍ବେ କି ତତ୍ତ୍ୱ-ବିଷାରଦ ? -୨
ଦୈନିକ ଯୋଗ ଅଭ୍ୟାସନ୍ତି
ସଭିଏଁ ଯୋଗୀ ତ ନୁହନ୍ତି | -୩
ଉଦ୍ଭବ ଅବା ଆବିଷ୍କାର
କଲେ ମାନ୍ୟତା ବିଜ୍ଞାନୀର | -୪
ପାରିଲେ ଆପଣାକୁ ଚିହ୍ନି
ବୋଲାଇବ ସେ ଆତ୍ମଜ୍ଞାନୀ | -୫
ସମତ୍ୱଭାବେ ଯୋଗଯୁକ୍ତ,
ସେ ଏକା ଯୋଗୀରେ ସ୍ୱୀକୃତ | -୬
ପ୍ରତ୍ୟହ ଲେଖି ପଢ଼ାଇଲେ
ତହୁଁ କି କବିତ୍ୱ ଉଛୁଳେ ? -୭
କାହାକୁ କହିବା କବିତା,
ଗଦ୍ୟଠୁ ତା'ର କି ଭିନ୍ନତା, -୮
ଏତିକି କହି ନ ପାରନ୍ତି,
କବିପରିଚୟ ଦିଅନ୍ତି | -୯
ଯେ ଭାବେ ମୁହିଁ ସର୍ବ ଜ୍ଞାତା
ସେ କାହୁଁ ଏ ସବୁ ଶିଖନ୍ତା | -୧୦
ମନରେ ଥିବ ଶୁଦ୍ଧ ଭାବ
ତେବେ ତ କବିତା ଲେଖିବ | -୧୧
ଭାବସଂଗତ ଶୁଦ୍ଧଭାଷା
ନ ଥିଲେ କବିତା ନୀରସା | -୧୨
ଅର୍ଥବୋଧକ ଶବ୍ଦସୂତ୍ର
ଥିଲେ ହିଁ କବିତା ପବିତ୍ର | -୧୩
ନିରୁକ୍ତଜ୍ଞାନହୀନ ହେଲେ

ଯଥାର୍ଥ ଶବ୍ଦ କାହୁଁ ମିଳେ ? -୧୪
ସୁବାକ୍ୟ ଛନ୍ଦ ବ୍ୟାକରଣ
କବିତାଦେବୀଙ୍କ ଭୂଷଣ । -୧୫
ସୁନ୍ଦରୀ ହେଲେ ହେଁ ଦୁହିତା
ସେ ଯେବେ ପ୍ରସାଧନଯୁକ୍ତା -୧୬
ସଭିଙ୍କ ମନ ପାରେ କିଣି;
ତତ୍ତୁଲ୍ୟା ଏ କବିତାରାଣୀ । -୧୭
ଯେତେ ପିନ୍ଧିବ ଅଳଙ୍କାର
ସେତେ ଦିଶିବ ସେ ସୁନ୍ଦର । -୧୮
ଧ୍ୱନିସଂଗତ ଯତିମାନ
ମିଷ୍ଟ କରନ୍ତି ଉଚ୍ଚାରଣ । -୧୯
ଶୁଦ୍ଧ ସନ୍ଦେଶ ଦିବ୍ୟଭାଷା
ସୁରମ୍ୟ ଅଳଙ୍କାରଭୂଷା- -୨୦
ମଣ୍ଡନେ ପ୍ରୀତା କାବ୍ୟରାଣୀ
ପ୍ରଭାବେ ଜିଣନ୍ତି ଧରଣୀ । -୨୧

## ମଧୁ-ମୁକ୍ତି-ମଧୁ 31

ବିପର୍ଯ୍ୟୟ ଆସେ ପର୍ଯ୍ୟାୟ ପର୍ଯ୍ୟାୟ ।
ଅଧାହତ ହୃଦେ ଅଧ୍ୟାୟ ଅଧ୍ୟାୟ ।। ୧ ।।
ସଂସାର ସଂକଟେ ସଂଶୟେ ସଂଶ୍ରୟ ।
ବିଚ୍ଛେଦ ବିଷାଦେ ବିଶ୍ୱ ବିଷମୟ ।। ୨ ।।
ସଂଗତି, ସଂଘାତ, ଶୃଙ୍ଗାର, ସଂଗମ ।
ମଧୁପୁଷ୍ପ ମଧ୍ୟେ ମଧୁପ-ବନ୍ଧନ ।। ୩ ।।
ମଧୁମୟ ମଧୁସୂଦନ ଶରଣ !
ମଧୁବନ୍ଧ ମଧ୍ୟୁ କର ଉଦ୍ଧରଣ ।। ୪ ।।

{ମଝିରେ ମଝିରେ ସୋପାନ ସୋପାନ କରି ବିପଦ ଆସୁଥାଏ । ପ୍ରବଳଭାବେ ଆହତ ହୃଦୟରେ ଆଘାତ ପରେ ଆଘାତ ପଡୁଥାଏ ।। ୧ ।। ସଂସାର-ସଂକଟ ହେତୁ (ଆତ୍ମ)ବିଶ୍ୱାସ ଉପରେ ସନ୍ଦେହ ଆସୁଥାଏ ।(ନିଜ ସ୍ଥିତିରୁ) ବିଚ୍ଛେଦ ହେତୁ ବିଷାଦିତ ମନ ବିଶ୍ୱକୁ ବିଷମୟ (ଦେଖେ) ।। ୨ ।। ସଂଗତି (ତାଳମେଳ; ଉଦାହରଣ:- ଗୀତ ସହ ବାଦ୍ୟ ଆଦି), ସଂଘାତ (ଅବିଚ୍ଛେଦ୍ୟ ମିଶ୍ରଣ; ଉଦାହରଣ: ସିମେଣ୍ଟ, ଚୂନ, ବାଲି

ଆଦିର ମିଶ୍ରଣ), ଶୃଙ୍ଗାର (ସୁସଜ୍ଜିତାବସ୍ଥାରେ ପ୍ରେମୀ/ପ୍ରେମିକାର ପ୍ରତୀକ୍ଷା), ସଙ୍ଗମ (ମିଳନ), ଏ ସମସ୍ତ ପଦ୍ମଫୁଲ ଭିତରେ ଭ୍ରମରର ବନ୍ଧନ ସଦୃଶ || ୩ || ଏହା ସଂସାରର ନିୟମ | ଏହି ମିଥ୍ୟା-ମଧୁର ବନ୍ଧନରୁ ମୁକ୍ତି ନିମିତ୍ତ ବାସ୍ତବ ମଧୁ ସେହି ମଧୁସୂଦନଙ୍କ ଶରଣାପନ୍ନ ହେଉଅଛି | (ହେ ପ୍ରଭୋ !) ଏହି ମଧୁ-ପ୍ରତୀତ ବନ୍ଧନ ମଧ୍ୟରୁ ମୋତେ ଉଦ୍ଧାର କର || ୪ || ବି: ଦ୍ର: ଏହାପରେ ବି ଦୈବଯୋଗାତ୍ କିଛି ସନ୍ଦେହ ରହିଯାଇଥିଲେ ଦୟାକରି ପଚାରନ୍ତୁ |}

## ନେତାଜୀ 32

**ବଙ୍ଗପୁତ୍ର, ଉଦ୍ଭଛାତ୍ର, ଉଗ୍ର ରାଷ୍ଟ୍ରପ୍ରେମେ,**
**ଚିର - ଉଦ୍ଧତ ସଂଗ୍ରାମେ,**
**ବୀର - ସୁଭାଷ ଚନ୍ଦ୍ର ତୁମେ !**
**ଥିଲେ - ଥାଅ ଏବେ ଯେଉଁ ଧାମେ,**
**କରି - ମସ୍ତକ ନତ ଆମେ**
**ଖୋଜି - ଚାଲିଛୁ ନଗରେ ଗ୍ରାମେ**
**ଦୁର୍ନିବାର ସେ ଯୋଦ୍ଧାରୂପକୁ**
**ଆକୁଳ ନେତ୍ରାୟନେ | -୧**
**ଭୂଲୋକର ଅଧା ରାଜୁତି ସ୍ପର୍ଦ୍ଧା**
**କରୁଥିଲା ଯିଏ**
**ତାହାରି ଦେଶରେ ପଶି**
**ଖୋଲି ଦେଇଗଲ ସେ ମୁଖ ପର୍ଦ୍ଦା -**
**ତୁମକୁ ଭରସି**
**ସେହି ଦେଶବାସୀ**

**ଦେଖିଲେ ସଭିଏଁ**
**କଲେ ହାଏ ହାଏ,**
**କରି ଦେଇଗଲ ତାହାଙ୍କୁ ଉଦାର,**
**ଏ ଦେଶ ଜନତା ଦୁଃଖେ କାତର;**
**ତୁମେ କି ଦୁଃସାହସୀ ! -୨**

**ନୁହେଁ ବଙ୍ଗଳା-ଉତ୍କଳ-ବଳା,**

ଆର୍ଯ୍ୟଭୂମିର ଗୌରବବୋଳା
ଗଳାରେ ସାଜିଲ ମାଳା;
ଝଲସାଇ ଦେଶେ ଆଶାର ଝଲକ,
ସାରା ବିଶ୍ୱରେ ମୁକ୍ତି ଆଲୋକ
ଜାଳିବାକୁ ଯାଇ ନିଜକୁ ହଜାଇ
କୋଟି କୋଟି ଆଖି ଲୁହରେ ଭିଜାଇ
ସେଇ - ଗଲ ଯେ ଆସିଲ ନାହିଁ –

ଅଞ୍ଚଳ-ଜାତି-ଧର୍ମ-ଭାଷାର ଭେଦ
ଊର୍ଦ୍ଧ୍ୱରେ ତୁମେ, ଦେଶ ପାଇଁ ଗଦ୍ଗଦ -
ଏ ଦେଶ ମଣିଷ ଏବେ ବି ବସିଛି
ତୁମ - ଫେରିବା ପଥକୁ ଚାହିଁ
ତୁମେ - ଥରେ କି ଫେରିବ ନାହିଁ ?
ଏ ଯେ - ତୁମ ପ୍ରିୟତମ ଭୂଇଁ,
ଏବେ ବି ତା' ଆଖି - ଲୁହଭିଜା ତୁମ ପାଇଁ !-୩

## ଶିଶୁ କେଡ଼େ ଖୁସି ଦେଖ, ସାଥୀରେ ତା ଜୀବନ୍ତ ଠାକୁର - 33



ମାଆ ମୋର ପୂଜା କରେ ଦେଖି	ପୂଜା ମୁଁ ତ ତାହାଠୁ ଶିଖିଛି;
ମାଗେ ମାଆ ମୋଅ ଲାଗି ପାଠ,	ମୁଁ ତ କିନ୍ତୁ ମାଗେ ନାହିଁ କିଛି || ୧
ଠାକୁର କି ଦେବେ, କି ବା ନେବେ	ସେଥିରେ କି ଯାଏ ଆସେ ମୋର ?
ମୋ ସାଥୀରେ ଖେଳୁଛନ୍ତି ନିତି,	ମୋର ଏଇ ଜୀବନ୍ତ ଠାକୁର || ୨
ନିତି ଭାଙ୍ଗି ସଜାଡ଼େ ମନ୍ଦିର,	ଶୁଆଏ ମୋ ଦେବତାଙ୍କୁ ସାଥେ
ଗାଧୋଇ ମୁଁ ଖୋଇ ଦିଏ ପୁଣି	ନିଜେ ରାନ୍ଧି ମୋର ନିଜ ହାତେ || ୩
ଜାଣେ ନା ମୁଁ ତୁମର ଈଶ୍ୱର	ତୁମକୁ ବା ଦେଇଛନ୍ତି କିସ
ମୋ ଦେବତା ଦିଅନ୍ତି ଫୁଟାଇ	ନିତି ଦିନ ମୋ ମୁଖରେ ହସ || ୪

## ଶୌଚାଗାର  ଅପ୍ରାପ୍ତିରେ    34






ଆସ ହେ ଭଉଣୀ ଭାଇ    ଶୌଚାଳୟ ପାଶେ ନାହିଁ
କାନ୍ଥ ଧାରେ ଦେଖି ଛାଇ ସାରିବା କାମ
ମନ ଦେଇ ପାଠ ପଢି    କାଟି  ଦେବା ଦୁଇ ଘଡ଼ି
ଘରକୁ ଗଲେ ବାହୁଡ଼ି ନେବା ବିଶ୍ରାମ |
ବିଦ୍ୟାଳୟ ଅନେକ ଦୂର;
ପାରିବା କି ପେଟେ ଜାକି ଜଳଭଣ୍ଡାର ?-୧
ନିର୍ଜନ ସଡ଼କ ଧାରେ    ପରିତ୍ୟକ୍ତ କାନ୍ଥଟାରେ
ପ୍ରକୃତିର ଆହ୍ୱାନରେ ରହିବା ଛିଡ଼ା;
ପଲକଟେ ହେଲେ ଛିଡ଼ା    ନିମ୍ନଗାମୀ ଜଳଧାରା
ଗ୍ରୀଷ୍ମ ଜର୍ଜରିତ ଧରା କରିବ ଥଣ୍ଡା |
ଆମର ତ ଗରିବ ଦେଶ;
ଅର୍ଥ ନାହିଁ ଶୌଚାଳୟେ ହେବ ନିବେଶ ||-୨

## ପ୍ରକୃତି ପ୍ରତ୍ୟୟ    35

ପଢ଼ିଅଛ ବ୍ୟାକରଣେ ପ୍ରକୃତି ପ୍ରତ୍ୟୟ;
ଦେଖିଅଛ ଅଭିଧାନେ ପଦର ଅନ୍ୱୟ ||    -୧
ଶବ୍ଦ ଥଥା ଧାତୁ ଦୁଇ ପ୍ରକାର ପ୍ରକୃତି,
ପ୍ରତ୍ୟୟ ଯୋଗରୁ ହୁଏ ଅର୍ଥର ପ୍ରତୀତି ||    -୨
ହେଉ ବା ନ ହେଉ ତାହା ବାକ୍ୟେ ପ୍ରୟୋଜିତ,
ବ୍ୟବହାର ଯୋଗ୍ୟ, ଏଣୁ ସେ 'ପଦ' କଥିତ ||    -୩
ଇଂରାଜୀ ପ୍ରଭାବେ କିଛି ବ୍ୟାକରଣକାର
'ଶବ୍ଦ' ବାକ୍ୟେ ଥିଲେ 'ପଦ' କରନ୍ତି ପ୍ରଚାର ||    -୪

ଏ ମାଟିର ଦିବ୍ୟ ଭାଷା ଅତ୍ୟଚ୍ଚ କୋଟିର;
ଭୁଲ ସଞ୍ଜ୍ଞା ଶିଖିଥିଲେ ସଂଶୋଧନ କର || -୫
ବିଦେଶୀ ଶିଖାଇ ଦେବେ ତୁମ ମାତୃଭାଷା,
କି ଅବା ଶିଖିବ ତହୁଁ କରିଛ ଭରସା ? -୬
ଗ୍ରହଣ କର ତାହାକୁ ଯାହା ଯୁକ୍ତିଯୁକ୍ତ;
ଭାରତୀୟ ବୋଲି ଲାଗୁ ନାହିଁ କି ଗର୍ବିତ ? -୭

## ନିତ୍ୟ ବାରମ୍ବାର 36

"ଅନିତ୍ୟ ସଂସାର ମଧ୍ୟେ ସକଳ ଅସାର |
ସାର ମାତ୍ର ସାଧିବାର ପର ଉପକାର" || -୧
ଯେଉଁ ମୁହୂର୍ତ୍ତରୁ ତାହା ନ ପାରିବା କରି |
ଦେଇ ଯିବା ଆଶୀର୍ବାଦ ଭୀଷ୍ମଦେବ ପରି || -୨
ହେଉ ସେ ଶରର ଶଯ୍ୟା, ଫୁଲ କି କଣ୍ଟାର,
ତେଜି ତାକୁ, ଧରି ପୁଣି ନବ କଳେବର || -୩
ଫେରିବା ଏଇଠି ଘେନି ଶକ୍ତିର ସମ୍ଭାର --
ଲାଗି ରହୁ ଏ ପ୍ରକ୍ରିୟା ନିତ୍ୟ ବାରମ୍ବାର || -୪
ନିତ୍ୟ ବାରମ୍ବାର ବୋଲୁଥିବା ଦିବ୍ୟ ମନ୍ତ୍ରମ୍ --
ହରିଶରଣମ୍, ଶ୍ରୀହରି ! ଶ୍ରୀ-ହରି ଶରଣମ୍ ||-୫

## ବାସ ତୁମର ଆସିଲେ ଭାସି 37

ବାସ ତୁମର
ପରାଣେ ମୋର
ଏବେ ବି ଆସେ କଦମ୍ବ ମୂଳେ |
ସେ ଫୁଲ ବାସେ
ମୋ ଚଉପାଶେ
ଆଜି ବି ସାଥୀ ମହକ ଖେଳେ ||

**-X-X-X-**

ନାହିଁ ତ ଆଶା
ତୋଳିବି ବସା
ତୁମକୁ ସାଥେ ନେଇ,
ଭାଳି ଭାଳିକା
ହେଲିଣି ଥକା
ମିଳୁନି ତୁମ ଛାଇ;

କେବେ ତ ଦିନେ
କରିବ ମନେ
ଘଡ଼ି ଦି ଘଡ଼ି ଏକେଲା କାଳେ || **-1**

ଜାତିକି ଜାତି
ଫୁଲର କତି
ଚାଲିଛ ଉଡ଼ି ଉଡ଼ି,
ଦିନେ ତ ଥକା
ଯିବ ମୋ ସଖା,
ବୟସ ଯିବ ଗଡ଼ି;
ଟଳିଲେ ବଳ
ଭାଜିବ ଖେଳ
ଆସିବ ଫେରି ମୋହରି ତୁଲେ || **-2**

ଏବେ ସକାଳ,
ବୁଡ଼ିବ ବେଳ
କେବେ ତ ହେବ ନିଶା;
ଆଜି ଟା ଖରା
ଦିଶୁଛି ତୋରା
କାଲି ହେବ ବରଷା;

ଝୁରୁଛି ଦିନ
ସରୁଛି ରାତି
ମରୁଛି ସାଥୀ ସଞ୍ଜ ସକାଳେ ||  -3

ଆଖି ରଙ୍ଗରେ
ସାକୀ ସଙ୍ଗରେ
ଫୁଲୁଛି ତୁମ ହିଆ
ଆସି ଯା, ହେଲେ
ମୋତେ ଛୁଇଁଲେ
ଜାଳିଦେବ ମୋ ନିଆଁ |
କେବେ ତ ଜାଳି
ଛାତି ଦୀପାଳି
ଖୋଜିବ ମୋତେ ସେ ନିଆଁ ତଳେ ||  -4

## ପକ୍ଷୀର ବିମୋଚନ 38

ପକ୍ଷୀ ! ଏବେ ଯାଅ ଏଠୁ ଉଡ଼ି,
ନିର୍ଲକ୍ଷ୍ୟ ଅନିଳେ ହେମ ବର୍ଣ୍ଣ  ପକ୍ଷ ଝାଡ଼ି,
ବତାସେ ଆବାସ ତାର ଯାଆନ୍ତେ ଉଜୁଡ଼ି,
ସାଥୀ ତୁମ ଗଲାଣି ବାହୁଡ଼ି ||  -୧

ଗୀତ ତାର ଯାଇଅଛି ହଜି;
ବସନ୍ତର ଅନ୍ତେ ଯଥା ଅଦୃଶ୍ୟ ମଳୟ,
ଭୂଧରୁ କୂପାର ପାରେ ସମୀର ବିଲୟ;
କେ ପାରିବ ତା ସରଣୀ ଖୋଜି !!  -୨

ଯାଅ ଏବେ ଉଡ଼ି ଯା ତୁ  ପକ୍ଷୀ;
ପକ୍ଷ ତୋର ସୁରୁଚିର, ବିସ୍ଫାରିତ ଆକ୍ଷି;
ଅଚଳ-ଶଇଳ ସିନ୍ଧୁ-ଉର୍ମିମାଳ ଦେଖି;
ଆକାଶେ ମୋ ବ୍ୟଥା ଗାଥା ଲେଖି ||  -୩

କେ ଭାଳିବ କିମ୍ପାଁ କଥା ତାର?
ସେ କି  ଦେଖେ ଫେରି ନିଜ ଉଚ୍ଛିତ ସ୍ୱସାରେ,
ଗାଏ ତା ମଧୁର ଗୀତ ସୁଲଳିତ ଗିରେ,
ପ୍ରିୟ ପୁଷ୍ପ ଆଲମ୍ବେ ତା ଶିର,                    -୪

କେ କହିବ ? ସେ ତ ଦୂରବାସେ;
ସଙ୍ଗୀତେ ନିରେଭ ସେ ତ, ଲାସ୍ୟେ ଅଲକ୍ଷ୍ୟିତ,
ଉତ୍ସବ-ଚାକ୍‌ଚକ୍ୟେ ହୃଷ୍ଟ ଚକ୍ଷୁ ଅପେକ୍ଷିତ;
ତେଜିଛି ତା' ଆବାସ ବିବାସେ ||                -୫

ବିକାଳେ  କୂଳିନୀ ଜଳ କୋଳେ
ସ୍ଫୁରିଲେ ଭାସ୍କର କରେ କେସର ତରଙ୍ଗ;
ସଙ୍ଗୀତ ମୁଖର ହୁଅ ସହସ୍ର ବିହଙ୍ଗ:
କାହା ସ୍ୱନ ହୁଏ ନାହିଁ ବାରି ||                 -୬

ସେହି ଭାବେ ତୁମର ସେ ପ୍ରିୟ --
ପ୍ରଦୀପର ଶିଖା ସାଜି ଆସେ ତାରା ମେଳେ,
ସମୀର ଲହରେ ତା'ର ଦୀର୍ଘଶ୍ୱାସ ଖେଳେ;
ଚିହ୍ନିବାର ନ ଥାଏ ଉପାୟ ||                   -୭

ଯାଅ ଉଡ଼ି, ଖୋଲିଛି ପଞ୍ଜର;
ସଜାଇବି ଦେଇ ତାକୁ ସୁପୁଷ୍ପ ସମ୍ଭାର,
ମଧ୍ୟାହ୍ନେ ଯା' ଫୁଟେ ଦେଖି କିରଣ ପ୍ରଖର;
ନ ଢାଳିବି ନୟନରୁ ନୀର ||                    -୮

ଶୀତ ଅନ୍ତେ ପର୍ଣ୍ଣ ପୁଷ୍ପ ଧରି
ହସିବ ଈଷତ ହାସ୍ୟେ ଲଜ୍ଜିତା ଧରଣୀ,
ସତେ କି ସେ ପରିଣୀତା ନବିନା ରମଣୀ !
ସାଥୀ ତୁମ ନ ଆସିବ ଫେରି !!                    -୯

*V vallari*

## ନିଛାଟିଆ ରାସ୍ତାପାରେ ରହୁଥିଲା ସିଏ 39

ନିଛାଟିଆ ରାସ୍ତା ପାରେ ପକ୍ଷୀ ବସା ଗଛ ପରେ
ଛୋଟ ସେ କୁଟୀରେ ଥିଲା ବାଳିକା ସିଏ;
କଥା ପଦେ ହେବା ପାଇଁ ନ ଥିଲା କେ ସାହି ଭାଇ,
ନ ଥିଲା ଜୀବନେ କେହି ପ୍ରେମିକଟିଏ || -୧-

ଘର ପାଖେ ତାର ନିତି ଫୁଟୁଥିଲା ଜାତି ଜାତି
ମଲ୍ଲିକା ମଧୁ ମାଳତୀ କଦମ୍ବ ମାଳ;
ଆକାଶରେ କୁଆଁ ତାରା ଦିଶେ ଯଥା ମନୋହାରା
ତହୁଁ ବଳି କେଡ଼େ ତୋରା ଶୋଭେ ସେ ଫୁଲ ||-୨-
ଏକାକିନୀ ଥିଲା ଝିଅ ଜାଣିଛ ତ କିଏ କୁହ
ଦେଖିଲା କେବେ ତା ଦେହ ମଶାଣି ମାଟି ?
ସେଇଠି ସେ ଅଛି ଶୋଇ; ମୋ ଆଖିକୁ ରହି ରହି
ଦିଶେ ସେହି ଚାନ୍ଦମୁହିଁ ଟିକି ମୁହିଁଟି || -୩-

## ନୃତ୍ୟରତ ଶିଶୁ ଦେଖି ପାରାବାର ତୀରେ 40

-୧-

ଆହା ରେ ଶିଶୁ କରୁଛୁ କେତେ ନାଟ,
ପାରୁନୁ ଜାଣି ପବନ ଆସେ ଖରେ,
ଗରଜନଟେ ଶୁଭୁଛି ପାରାବାରେ,
ବିକଟାଳ ସେ, ନିର୍ଦ୍ଦୟ ବିକଟ |
ପବନର ବି ବିରତି ନାହିଁ ଲେଶ,
ଉଠୁଛି ଥରି ମଥାରେ ତୋର କେଶ |

ଅବୋଧ ଏବେ ପାରିନୁ କିଛି ଜାଣି;
ପୁଣ୍ୟ ପରେ ପାତକ ଯାଏ ଜିଣି;
ଯେତିକି ବେଗେ ମମତା ଯାଏ ଘଟି
ତାହାଠୁ ବେଗେ କେ ଦିଏ ତାକୁ ଲୁଣ୍ଠି |
ଅପର ଲାଗି ବୁହାଇ ଦେଇ ଝାଳ,

ଶ୍ରମିକ ଯାଏ ମଶାଣି ମାଟି ତଳ ।
ପଛରେ ଛାଡ଼ି ଫସଲ ଯେତେ ତାର,
କୁଆଡ଼େ ଯାଏ କ୍ଷେତରୁ ହଳଧର ।
ଅବୋଧ ଯେଣୁ ମାଡୁନି ତୋତେ ଡର;
ଝଞ୍ଜା ଅବା ଉଗ୍ର ପାରାବାର ।।

-୨-

କେହି କି କେବେ କହିନି ତୋତେ ପଦେ,
ସାବଧାନେ ତୁ ଚାଲିବୁ ପାଦେ ପାଦେ;
ବାରୂଢ଼େ ଥରେ କୋଟିର ଗଲେ ପଡ଼ି
କି ଭଳି ତାର ଦେହଟା ଯାଏ ପୋଡ଼ି;
କହିଲେ କିଏ ଜାଣିବୁ ସିନା ଧନ,
କହି ଦେବାକୁ ବଳୁନି ମୋର ମନ;
ଏବେ ତୁ ଶିଶୁ, ଅନେକ ତୋର ଆଶା,
ଏଣୁ କହୁଛି ଭିନ୍ନ ଏକ ଭାଷା ।।

ଯେ ଯାହା ଦେଲେ ନେଇ ଯିବୁ ଆଦରି,
ସଭିଙ୍କୁ ତୋର ଆତ୍ମୀୟ ବିଚାରି;
ତୋ ମାଆ ପରି ଭୋଗିବୁ ଦିନେ ଜ୍ୱାଳା,
ପଡ଼ିବୁ ଭାଜି ଆସିଲେ ଶେଷ ବେଳା;
ଏବେ ତ ଶିଶୁ, ଅନେକ ତୋର ଆଶା;
କହିବି ତେଣୁ ଭିନ୍ନ ତୋତେ ଭାଷା ।।

## ନବବର୍ଷୋତ୍ସବ ଗତେ 41

ଆର୍ଯ୍ୟ ଦେଶର
ନବ ବତ୍ସର
ଆସୁଛି ଅଳ୍ପ ଦିନେ;
ବାରୁଣୀ ସେ ପାରି
ବେପାରୀ-ସମନ
ହାରିବି ଦୂର୍ବା ବନେ ।।-୧

ରସା ଆଶ୍ୱାସେ
ଉତ୍ସବ ମୋର,
କ୍ଲୈବ୍ୟ କଳ ନା ମୂଢ଼ !
ଭେଦ ସର୍ଜକ !
ପ୍ରାଜନେ, ପ୍ରହାରେ,
ଭାଜିବ ସକ୍ଥି  ହାଡ଼ ||-୨

ବିକ୍ରମ କରେ
ଶକ-ଅଦ୍ଧର
ନିଷଦ ଶବ୍ଦ  ଶୁଣ;
ବୈରୀ ଚାତୁରୀ
ଚୂର୍ଣ୍ଣନକାରୀ
କରୁଛି ଗୁଞ୍ଜରଣ ||-୩

## ନବ ବର୍ଷ ! ଆସନା ଆସନା 42

ନବ ବର୍ଷ ପ୍ରତ୍ୟୁଷରେ ଛାଡ଼ିଲି ବିଛଣା;
ଜାଣିବି ଲୋକଙ୍କ ଦାବି, କଲି ତନା ଘନା || -୧
ଦାକ୍ତର, ଔଷଧବାଲା, ଔଷଧ ବିକାଳି
ସମୃଦ୍ଧି ସମ୍ପଦା ଲାଗି ହେଉଛନ୍ତି ଭାଳି || -୨
ନବ ବର୍ଷ ଆଣି ଦିଅ ନୂଆ ନୂଆ ରୋଗ,
ରୋଗ ଦେଲେ, ଚଢ଼ାଇବୁ ନୂଆ ନୂଆ ଭୋଗ || -୩
ଗେଟି-ସିମେଣ୍ଟବାଲା ମାଗେ ଦଇବ ବିପତ୍ତି;
ଭାଙ୍ଗି ଯାଉ ଘରବାଡ଼ି ଚାଲୁ ମରାମତି || -୪
ଟିଭି ବାଲା କହୁଛନ୍ତି ଚାଲୁ ଆନ୍ଦୋଳନ;
ଜୀଅନ୍ତା ଭିଡିଓ ହେବ ସିଧା ପ୍ରସାରଣ || -୫
ଓକିଲ କହନ୍ତି ବଢୁ ମାଲି ମୋକଦ୍ଦମା;
ଆୟ ହେବ କଚେରୀରେ ଲୋକ ହେଲେ ଜମା || -୬
କହନ୍ତି ଅର୍‌ଟିଆଇ ବାଲା ବଢୁ ଭ୍ରଷ୍ଟାଚାର;

ହେଲେ ଆମ ଜନସେବା ବଢ଼ିବ ଏଥର ।। -୭
ବୋଫୋର୍ସ୍ କୋମ୍ପାନି କହେ ଲାଗୁ ଘନଘଟା;
ତୋପ କମାଣର ଲାଗି ରହୁ ବିକ୍ରି ବଟା ।। -୮
ଛତ୍ରେ ଛତ୍ରେ ଦେଖିଲିଣି ନାନା ବିଡ଼ମ୍ବନା;
ନବ ବର୍ଷ ତୁମେ ଜମା ଆସନା ଆସନା ।। -୯

## ନବବର୍ଷ ଭାବନା ୨୦୧୬-୧ ୭ 43

କରିନି ତୁମର ସ୍ୱାଗତ କେବେ ନବବରଷ;
ମୁଁ ଜାଣେ ତୁମେ ଯା' ପାରିବ କାହୁଁ ଦେଇ ହରଷ ।। -୧
ଗଲା ସନ ମାନ ଥିଲେ ଯେ ତୁମ ଅଗ୍ରଜ ରାଜି,
ବରଷେ ଜଞ୍ଜାଳ ଦେଇ ସେ ଏଠୁ ଗଲେଣି ହଜି ।। -୨
ମୁଁ ଜାଣେ ତୁମର ଜାତ ଲଗନ, କୁଳ ଆଚାର,
ଲଙ୍କାରୁ ଯେତେକ ବାହାର ସବୁ ଅସୁରାକାର ।। -୩
ମହାକାଳ ତୁମ ଜନକ ମାତା ଘନ ଅନ୍ଧାର;
ତୁମଠାରେ ନାହିଁ ହୃଦୟ, ତୁମେ ବଡ଼ ନିଷ୍ଠୁର ।। -୪
ପାଦ ତୁମ ପଡ଼ୁ ନ ପଡ଼ୁଁ ଶୁଭେ ଆତଙ୍କ ସ୍ୱର,
ଜଳ ସ୍ଥଳ ବନ ଆକାଶ ପ୍ରାଣୀ ତ୍ରାସ-ଆତୁର ।। -୫

ପୁରୁଣା ବରଷ ଦେଲେ ଯା ପୀଡ଼ା ଥରକୁ ଥର,
ଧରି ନାହିଁ ତାଙ୍କ ଦୋଷ ମୁଁ ଶୁଣ ନବ ବତ୍ସର ।। -୬
ତୁମେ ଆସ ଏବେ ଫେରିବ ଯେବେ ବରଷେ ଗଲେ;
କ୍ଷମା କରି ଦେବି ଦୋଷ ମୁଁ ତୁମ ବାହୁଡ଼ା ବେଳେ ।। -୭

## ନବବର୍ଷାରମ୍ଭୋତ୍ସବେ ବଣ୍ୟପଶୁସଭା 44

ନବ ବର୍ଷରେ ନର-ଜହ୍ଲାଦ ବଜାଇ ମୃତ୍ୟୁ-ଭେରୀ,
ହିଂସା-ପଥରେ ମୃତ୍ୟୁ-ରଥରେ ଆସୁଅଛି ଅବତରି ।।-୧
ଉନ୍ମାଦୀ ନର-ରାକ୍ଷସ ମାଗେ ନୂତନ ବର୍ଷାଗମ,
ଅପର ମେଦରେ ତପ୍ତ-ସ୍ୱେଦରେ ସପ୍ତି-ମଦିରା ପାନ ।।-୨

ହିଂସା-ଧାମରେ ମୃତ୍ୟୁ-ମଦିରା, ବଞ୍ଚନ ବିଭୀଷିକା;
ବିଯୋନିଜନ୍ମ ଶତଧା କାମ୍ୟ, ନର ଧିକ୍କାର-ସଖା ||-୩
ମୂର୍ଦ୍ଧନ ଯାର ଦୃପ୍ତ ବାସର ମତ୍ତ ନିଶୀଥ ସାରା;
ମସ୍ତକ ଛେଦି ରକ୍ତ-ପିପାସୁ ମାଗିବ ଶାନ୍ତି-ଧାରା ||-୪

## ନାରୀନିର୍ଯ୍ୟାତନାର ପ୍ରଚ୍ଛନ୍ନ କାରଣ 45

ଯାଆ ଶାଶୁ  ନଣନ୍ଦଠୁ ନାରୀର ଯାତନା |
କନ୍ୟାଶିଶୁ ଜନ୍ମ ମାତ୍ରେ ମାତା ଆନମନା ||  -୧
ନାରୀର ତ  ନାରୀ ହେଲା ପ୍ରଥମ ବଇରୀ |
ପୁରୁଷଙ୍କୁ ଦୋଷ ଦେଇ କି ପାଉଛ  ନାରୀ || -୨
ପୁଅଟିର ବିଭା କଲେ ରଖୁନ କି ଆଶା |
ଆଣିଲେ ତା' ବାପଘରୁ ଚଳିବ ବେଉସା ||  -୩
ଜାୟା ନେଇ ପତି ଦେଖେ ଅନେକ ସ୍ୱପନ |
କିଏ କରେ ତା' ମଥାରେ  ରଭସ ବପନ || -୪
ପର ଦୋଷଦର୍ଶୀ ! ଦେଖ ନିଜ ଅଭ୍ୟନ୍ତର |
ଦୋଷମୁକ୍ତ ହେଲେ କର ଅପର ସଂସ୍କାର || -୫

## ଜରା ଜଞ୍ଜାଳ 46



ବାଲ୍ୟ କାଳ ଧୂଳିଖେଳ 		ସ୍ମୃତି-କୋଳେ ଉଠେ ଝଳି;
ଅବଶ ବୟସେ ଈଶା 		ବିବଶେ ଦୀପାଳି ଜାଳି ||
ଆରତ ଆରତି ଢାଳେ 		ଶାଶ୍ୱତ ସଂସ୍ଥିତି ତୁଳେ;
ସଂସାରୁ ନିସ୍ତାର ଖୋଜେ, 	ଜର୍ଜର ଜଞ୍ଜାଳ ଜାଳେ ||

## ଲୁଣି ପାଣି 47



ଚୋରା ଚୋରା ପୀରତିରେ ଆଖିରେ ଉଛୁଳା ପାଣି;
କେବେ ହେଇ ଥିଲା ଦେଖା
ଖତାରେ ରହିଛି ଲେଖା
ଠୁଙ୍ଗାବାଲା ଖାତା କେବେ ନେଇ ଗଲାଣି ||
ଠିକଣା ତା ଲେଖି ଗଲା ପାରାବାର ତୀରେ
ଦିଶୁଥିଲା ଫିକା ଫିକା ଚାନ୍ଦିନୀ ରାତିରେ
ଲୁଣି ମାଡ଼ି ଏବେ ସବୁ ଧୋଇ ଗଲାଣି ||

## ଟିକି ତାରା କହେ 48



ନିଶୀ କାଳେ ଶଶି କୋଳେ ଟିକି ତାରା କରେ ଅଳି
ଅପୂର୍ଣ୍ଣା ଅଚଳା; ପୂର୍ଣ୍ଣ- ମସୀ ଦ୍ୟୁତି ଦିଅ ଢାଳି | ୧
ଭୂତଳ ଶୀତଳ କର, ଉର୍ବୀରୁହ ଦିଅ ତୋଳି;
ନୃସଂସ ନହୁଷ ହସ୍ତେ କାନନ କୁଣ୍ଠିତ-ଶିରୀ | ୨
ସ୍ୱହସ୍ତେ ରସନା ନାଶି ଦୈବ ତାପ ଭୋଗେ ନର;
ବୋଧ ଧାରେ ଓଷଧୀଶ ପ୍ରସୀଦ ତା ମତି ଢ଼ର | ୩

## ଦିଅ ମାତା ଜଳ 49



ଅଳସ ବିସଳ ମେଲି   ଲୋଚନ କୋମଳେ
ଆହ୍ଲାଦ ବିହ୍ୱଳେ ଦୋଳେ   ମୃଦୁଳ ଅନିଳେ ।   ୧
ମହୀରୁହେ କହେ ମାତା   ଢାଳି ଦିଅ ଜଳ;
ସିକ୍ତ କର କେଶ ମୋର,   ଦିଅ ମୋତେ ବଳ ।୨
ଆଦିତ୍ୟ ଆତପ ପାତେ   ମଳୟ ଅନିଳେ
ବିକଶିବି କିସଳୟ   କୁଳଜ କୁଶଳେ ।   ୩
ଦେଖିବି ଭୁବନେ ନବ ଜୀବନ ଯୌବନ;
ଆହ୍ଲାଦେ ଆସ୍ୱାଦି ଶୁଦ୍ଧ   ଭୁବସ ମୋହନ ।   ୪

## ଆସ ସାଥୀ   50



କଳି ଡାକେ ଅଳି ଶୁଣ ବେଳ ଯାଏ ଗଡ଼ି
ଘଡ଼ିକେ ଯିବ ଏ ଜୀବ ଧରା ତଳେ ସଢ଼ି ।
ବେଳ ଥାଉଁ ଆସ ସାଥୀ   ଅଧର ବିସ୍ତାରି,
ଆଦରେ ଅଧିତ କର   ମଧୁ ଯାଏ ଝରି ।
ଭରି ଦିଅ ତନୂମନେ   ସରାଗୀ ଚୁମ୍ବନ,
ସାର୍ଥ କର ଏ ଭଙ୍ଗୁର   ଇଷିତ ଯୌବନ ।

## ଦଉଡ଼ିବ କାଠ ଘୋଡ଼ା   51



ମାତା ଡାକେ ଆସ ପୁତ୍ର ଛାଡ଼ି ଶୁଷ୍କ କାଠ ଗଡ଼ା;
ଶିଶୁ କହେ ଜାଣିନୁ -- ଏ ମୋ ମନ-ମରୁତ ଘୋଡ଼ା !
ଏବେ ତାକୁ  ଛାଡ଼ି ଯିବି ନାହିଁ ;
ନଳରେ ଆସିଲେ ଜଳ ତାକୁ ମୁଁ ଦେବି ସହଳ
ନିଜ ହାତେ ଗାଧେଇ ପାଧେଇ ||-୧
କଡ଼େଇ ଖୋଷଣୀ ଧରି ରଖିଛି ରୋଷେଇ କରି
ପୋଛି ପାଛି ଖୁଆଇବି କ୍ଷିରୀ ପୁରି ତରକାଆରି;
ସେ ତ କେବେ ନୁହେଁ ମା ଅଲୋଡ଼ା
ଅଉଷଧ ପେଇ ଦେଲେ, ଖାଇ ପି'ଇ ବଳ ହେଲେ
ଉଠି ଦଉଡ଼ିବ ମୋର ଘୋଡ଼ା ||-୨

## କାହାକୁ କହିବି କହ 52



ଦେହର ଦହନ ଲୁହର ଲେହନ କାହାଣୀ କାହାଣ କାହାକୁ କହିବି କହ  |
ଦିବସ ବିରସ ନିଶୀଥ ବିବଶ ବୟସ ବାୟସ ଶମିତ ସରିତ ସୁଅ ||
ବର୍ଷ ଯାକର ସ୍ୱର୍ଣକାତର ଗୋଟିଏ ଗୋଟିଏ ଦିନ,
ଶେଫାଳୀ ଦଳର ତଳ୍ପେ ମଳିନ ପଳିତ ଗଳିତ ଚିହ୍ନ ||

## ମିଳିବ କି ଜାଗା ଟିକେ 53

ଆକାଶରେ ଧୀରେ ଧୀରେ ଫାଟୁଛି ସିନ୍ଦୂରା;
ହଜି ହଜି ଯାଉଅଛି ଏବେ କୁଆଁ ତାରା ||  -୦୧
ପୂରୁବ ଆକାଶ ଦିଶେ ପାଟଳ ବରଣ;
ପ୍ରାଣେ ପ୍ରାଣେ ଖେଳି ଉଠେ ନବ ଜାଗରଣ ||  -୦୨
ଭାଙ୍ଗି ଭାଙ୍ଗି ଯାଉଅଛି ନିଦ ଆଖି ତଳୁ;
ମନେ ପଡ଼େ ଘର କଥା ସକାଳୁ ସକାଳୁ ||  -୦୩

ମନେ ପଡେ ଗାଁ ବିଲ ବନ୍ଧ ତୋଟା ମାଳ;
ମନେ ପଡେ ଗୁଡି ଉଡା, ଆଲି ବାଟି ଖେଳ || -୦୪
ଛୋଟିଆ ଡାଙ୍ଗଟେ ଧରି ଗଡାଇଛି ଚକ;
ଉଡ଼ାଇଛି ଗୁଡ଼ି କେତେ ଶୀତ ଦିନ ଯାକ || -୦୫
ଡାଳୁ ଡାଳ ଖେଳିଅଛି କେତେ ଝୁଲି ଝୁଲି,
ଦିନ ସାରା ଉଡ଼ାଇଛି ଗାଁ ଦାଣ୍ଡ ଧୂଳି || -୦୬
ଗାଁ ମୁଣ୍ଡେ ଖେଳିଛି ମୁଁ ବାଘଛେଲି, ନଟୁ;
କାଗଜ ରକେଟ ଉଡ଼ା ଏପଟୁ ସେପଟୁ || -୦୭
ଖାଇଛି ବିଲରେ ପଶି ବିରିଠୁ କୋଳଥ;
ସୋରିଷ ଫୁଲକୁ ଦେଖି ଗାଇଅଛି ଗୀତ || -୦୮
ଗାଇଛି ମୁ ଜହ୍ନିଫୁଲ, ରଜଦୋଳି ଦେଖି;
ଡାକଘର କାନ୍ଥେ ନାମ ଦେଇଅଛି ଲେଖି || -୦୯
ନଈ ଧାରେ ଧାରେ ଗଢ଼ିଅଛି ବାଲି ଘର;
ଭାଙ୍ଗୁ ପଛେ ରାତିକରେ କେତେ ସେ ନିଜର || -୧୦
ଘର ଭଙ୍ଗା ଭଙ୍ଗି ନେଇ କରି ଅଛି କଳି;
ଛୁଆରେ ଛୁଆରେ କେତେ କରିଅଛୁ ମେଳି || -୧୧
ଆଜି କେ ଏ ପଟେ ପୁଣି କାଲି ଆର ପଟେ;
ଆଜି କଟ୍ଟି କାଲି ମିଟ୍ଟି କା ସାଥେ ଦିନଟେ || -୧୨
କିଏ କାହା ବଗିଚାରୁ ନେଇ ଗଲା ଫୁଲ,
କରିଛି ଚୁଗୁଲି କେତେ, କେତେ କଳି ଗୋଳ || -୧୩
ହଜିଲା ହଜିଲା ଦିନ ଫିକା ଫିକା ଦିଶେ;
ଚାଲି ଯିଏ ଗଲା ଦୂରେ ସେ କି ଆଉ ଆସେ || -୧୪
ଏବେ ଅଛି ସେହି ଗାଆଁ ବନ୍ଧ ବିଲ ମାଳ;
ନାହିଁ ସେହି ଛୁଆ ଦିନ, ସେହି କଳି ଗୋଳ || -୧୫
ଗାଆଁ ଗଲେ ମିଳେ ସିନା କେତେ ନମସ୍କାର;
ଛୁଆ ଦିନ ରହି ରହି କରେ ହାହାକାର || -୧୬
ସେଠି ଆଉ ମିଳେନା ସେ ସାଙ୍ଗ ସାଥୀ ମେଳି;
କିଏ କେତେ ଦୂରେ ଗଲେ, ଗଲେଣି କେ ଟଳି || -୧୭
କିଏ ଜାଣେ ଦିନ ମୋର କାଲି ଅବା ଆଜି;

ସରିବ କାଳକ ସେହି ଛୁଆ ଦିନ ଖୋଜି || -୧୮
କିଏ ଜାଣେ ଜୀବ କେବେ ଯିବ କେଉଁ ସ୍ଥାନେ;
ମିଳିବ କି ଜାଗା ଟିକେ ଗ୍ରାମ ଶମଶାନେ ? -୧୯

## ନାଚୁଥିବା ତାଳେ ତାଳେ 54



ମାଆ ମୋତେ ଶିଖାଇଛି ନାଚ;
ପିଲାବେଳୁ ନାଚିବି ମୁଁ ନିତି;
ଆସ ଆସ ଯେତେ ଛୋଟ ପିଲା
ଆସ ମୋର ଯେତେ ସାଙ୍ଗ ସାଥୀ || -୧

ନାଚୁଥିବା ଖୋଲା ପଡ଼ିଆରେ
ସଙ୍ଗୀତର ତାଳେ ତାଳ ଦେଇ;
ମୁଦ୍ରା ପରେ ମୁଦ୍ରା ଶିଖି ଶିଖି
ନାଚୁଥିବା ଆମେ ଥେଇ ଥେଇ || -୨

ଆସି ଯିବ ନାଚ ଲାଗି ଲୁଗା,
ବାନ୍ଧା ହେବ ପାଦରେ ଘୁଙ୍ଗୁର;
ନେପଥ୍ୟରେ ବାଜୁଥିବ ବାଜା,
ଭାସି ଆସୁଥିବ ଗୀତ ସ୍ୱର || -୩

ନାଚ ସାରି ପାଲଟିବ ଲୁଗା,
ପୋଛି ଦେବା ସବୁ ପାଉଡର;

ମୁହଁ ହାତ ଧୋଇ ଚାଡି ଖାଇ
ଖାଲି କରି ଫିଙ୍ଗିବା ପତର ||          -୪

ଦିନ ବେଳେ ଯିବା ବିଦ୍ୟାଳୟ,
ଧରି ଖାତା  କଲମ ସିଲଟ;
ସଞ୍ଜ ହେଲେ କରି ନେବ ଘରେ
ଗୁରୁ ଯାହା ଦେଇଥିବେ ପାଠ ||          -୫

ଗୁରୁଜନେ ଦେବା ସନମାନ,
ସାନ ଥିଲେ କରିବା ଆଦର;
ଯେ ଦେଖିବ କହିବ ଖୁସିରେ --
କେତେ ଭଲ ଭବିଷ୍ୟ ଆମର ||          -୬

## ବଧୂ ଚୟନ          55



ଏ ଯୁଗର ରାଜଜେମା ଚଳିଲେ ପାରିଧି;
ଚିପା ଉର୍ଦ୍ଧ୍ୱବାସ,  ଅଧା ନିମ୍ନବାସ ପିନ୍ଧି ||-୧
ଗୌର ବର୍ଣ୍ଣ ତନୁ ଶିରୀ ଉଦ୍ରଥ ବାହନ;
କ୍ଷୁଦ୍ର କ୍ଷୁଦ୍ର ଚୂଳ କ୍ଷୁଦ୍ର  କବରୀ ମଣ୍ଡନ ||-୨
ଭଙ୍ଗା ଫଟା ସଡ଼କର ସେପାରେ ସାଗର;
କରିବେ ଉଦଧି କୂଳେ କର୍କଟ ଶିକାର ||-୩
କୁର୍କୁଟ ଆନନେ ଦେବେ କର୍କଟ ଭୋଜନ;

ସିନ୍ଧୁ ତଟେ କରି ମୁକ୍ତ ସମୀର ଆଘ୍ରାଣ ||-୪
ଅବଶିଷ୍ଟ ଜଳବିଲ୍ଲ କରି ନିପାତନ,
ଆସାଦେ କରିବେ ତହୁଁ ନିର୍ଯାସ ରନ୍ଧନ ||-୫
ସନ୍ଧ୍ୟାରେ ଆସିବେ ଶାଶୁ ଘର ଲୋକେ ଗୃହ;
ଗୁଣ ଦେଖି କରି ନେବେ ବଧୂ ପରିଗ୍ରହ ||-୬
ସଭିଏଁ ଚାଖି କର୍କଟ ନିର୍ଯାସ ବ୍ୟଞ୍ଜନ,
ରାଜପୁତ୍ର ଲାଗି କନ୍ୟା କରିବେ ଚୟନ ||-୭

## କୁତୁକୁତୁ ବେନି ଭଗ୍ନୀ 56



ମାରିବୁ ମୋତେ ତୁ କରି କୁତୁକୁତୁ ବୁଝୁନି କି ମନ ତୋର
ମାଆ ତ ଶୋଇନି କି ଆଣିବି ନାନୀ ରୋଷେଇ ଘରୁ ଆଚାର ??
ଆଉ ତୁ ଲାଗନା ଆସିଲେ ଭାଇନା କାନ୍ଦିବି ତା ପାଶେ ଯାଇ
ପାଇଯିବୁ ମଜା ଖସିଯିବ ଖଞ୍ଜା କୁତୁକୁତୁ କଲେ ଭାଇ ||

## ବିଧ୍ୱସ୍ତ ନଗରୀ 57

ଉର୍ବରା ଉପାନ୍ତ ପାରେ ବିଳାସୀ ବିଚୀ ବିହାରେ
ରଜତ ସୈକତ-ସାରେ ସଦନ ସଭା;
ଦେଖିଲି ଅଳପ କାଳ ଅଟ୍ଟାଳିକା ସୁବିଶାଳ
ଦିନାର୍ଦ୍ଧ ନିଦାଘ ଜାଳ ପର୍ଯ୍ୟସ୍ତ ଉଭା;
ନିରେଖନ୍ତେ ଉତ୍ପ୍ରେକ୍ଷା ଭରେ
ସାମାତ୍ୟ ଭୂଭୃତ ପୃତ ଦୃପ୍ତ ନଗରେ ||-୧

ବିପୁଳା ପିଣ୍ଡନ ଭାଜି ନିସ୍ତଳ ଭବନ ରାଜି
ଗର୍ଭପଥ ଭୃଙ୍ଗ ସାଜି ଥିଲା ବିରାଜି
ଶଙ୍ଖ ମୃଦଙ୍ଗ ନିନାଦ ଶିଖରେ ସ୍ତବ ଶବଦ

ଭେଦି ଧୂମ୍ରାଭ ଜଳଦ ଉଚ୍ଚେ ଗରଜି
ସରଜନ୍ତି ଭୀମ ନିର୍ଘୋଷ
ଅଭ୍ୟାସେ ବ୍ୟସ୍ତ ସହସ୍ର ଯୋଦ୍ଧୃ ପୁରୁଷ ||-୨
ଲାଗି ମୋ ପ୍ରଯୁତ ହସ୍ତ ରେଣୁ ଗୃହ ଅକସ୍ମାତ
ତତ୍କାଳ ହେଲା ଦଳିତ ଲୋଟିଲା ତଳେ,
ନ ରହିଲେ ପୁରନାରୀ କି ଅବା ନଗର ଶିରୀ
ନ ସହି ନର-ଅଙ୍ଗୁରୀ ବିନାଶ ଗଲେ |
କହ ପ୍ରଭୋ ! ଦେଖିଛ କେତେ;
ବିଧ୍ୱସ୍ତ ନଗରୀ ତବ ପୟର ପାତେ ||-୩

ଉର୍ବରା= ପୃଥିବୀ; ଉପାନ୍ତ= ଶେଷ; ରଜତ= ରୌପ୍ୟବର୍ଣ୍ଣ; ସୈକତ-ସାରେ= ସୁନ୍ଦର-ବାଲିରେ ସଦନ= ଘର ସଭା= ସମ୍ମେଳନ, ସମୂହ; ଦିନାର୍ଦ୍ଧ= ଦ୍ୱିପ୍ରହର; ନିଦାଘ ଜାଳ= ତାପ ପର୍ଯ୍ୟସ୍ତ= ପରିବେଷ୍ଟିତ; ଉପ୍ରେକ୍ଷା= ଔଦାସୀନ୍ୟ; ସାମାତ୍ୟ= ପାରିଷଦ୍/ଅମାତ୍ୟଙ୍କ ସହ; ଭୂଭୃତ୍ = ରାଜା; ପୃତ୍=ସେନା; ଦୃପ୍ତ= ଗର୍ବିତ; ବିପୁଳା= ମାଟି; ପିଣ୍ଡନ= ପିଣ୍ଡୁଳା; ନିସ୍ତଳ= ତଳହୀନ,ଗୋଲ; ଗର୍ତ୍ତପଥ= ସୁଡ଼ଙ୍ଗ; ଭୃଙ୍ଗ= ବିଶାଳ ଜଳାଧାର/କୁଣ୍ଡ; ପ୍ରଯୁତ= ଅସଂଯତ; ଅଙ୍ଗୁରୀ= ଆଙ୍ଗୁଳି

## ପ୍ରୀତିର ପୀୟୂଷ ଢାଳ 58

କୁସୁମିତ ତୁମ
ହୃଦ ବଲ୍ଲରୀ
ଗନ୍ଧିତ ମହକରେ
ମୁଗ୍ଧ ମୋହିତ
ମତ୍ତ ମୋ ମନେ
ମଦିରାର ମଧୁ ଝରେ ||

ତୁମ ଅଙ୍ଗନେ
ରାତ୍ରୀଚର ମୁଁ
ପ୍ରସାରି ଭିକ୍ଷା ଥାଳ;
ଚଞ୍ଚରୀ ମୁଁ ଗୋ;
ବଲ୍ଲରୀ ବାଳା !
ପ୍ରୀତିର ପୀୟୂଷ ଢାଳ ||

## ଏ ଯୁଗର ନାରୀ କହେ: ମନୁଷ୍ୟ ହୁଅ 59



ନାରୀ ବୋଲି ମୋତେ କେବେ ଛୋଟ ନ ମଣିବ;
ମନ୍ଦ ବ୍ୟବହାର କଲେ ଦେବି ପରାଭବ || -୧
ସତ୍ୟ ପଥେ ଚାଲି ମୋର ଦୃଢ଼ ମନୋବଳ;
ମନ୍ଦ ଦୃଷ୍ଟି କରି ମୋତେ ପାଇଲ ତା' ଫଳ ||-୨
ଆଉ ଯେତେ ବନ୍ଧୁ ତୁମ ଲମ୍ପଟ କୁକ୍କୁର;
କହିବ ଏଣିକି ରହିଥିବେ ହୁସିଆର || -୩
ଇସ୍କୁଲ କଲେଜ ପଢ଼ି ନ ହେଲେ ମଣିଷ;
ନାରୀଠୁ ପାଇବ ବିଧା, ଗୋଇଠା ବିଶେଷ || -୪

## ମଙ୍ଗଳ କାମନା 60

ସୁଖେ କଟୁ ତୁମ ଦିନ  ଯାଉଛି ମୁଁ ଦୂରେ
କର କାମିନୀ ଚୟନ ନବ ଜୀବନରେ || -୧
ମନେ ମୁଁ ଆସିବି ଯେବେ ନ ଧରିବ ନାମ,
ମୋ ଲାଗି ଭାଙ୍ଗିବ ନାହିଁ ସ୍ୱପ୍ନ ଅନୁପମ || -୨
ତୁମ ସ୍ମୃତି ଦେଶୁ ମୋତେ ଦେଇ ଦିଅ ବଳି,
ଅଛି ଯା' ସନ୍ତକ ମୋର ଦିଅ ତାକୁ ଜାଳି || -୩

ଜାଣି ନେବ ଅନିସ୍ଚିତ ଥିଲି ମୁଁ ବେଦନା,
ଅବୋଧ ଜୀବନେ ତୁମ ଏକ ଦୁର୍ଘଟନା || -୪
ପାରିଲେ ମୋ ଦୋଷାଦୋଷ କରିବ ମାର୍ଜନା;
ଘେନ ମୋର ନିରନ୍ତର ମଙ୍ଗଳ କାମନା || -୫

## ଲୋଡ଼ା ନାହିଁ ଦେବତାର ଶିର 61



ଛୋଟିଆ ପାଚେରୀ ଧାରେ ଅଗଣା ଭିତରେ;
ଭଙ୍ଗା ମଠିଆର ପାଖେ ଗାମଲା ମାଟିରେ ||
ଅଗଣାରେ ଫୁଟିଅଛି ନାନା ଜାତି ଫୁଲ |
ସେ ଫୁଲର ରୂପ ଶିରୀ ଜଗତେ ଅତୁଳ ||
କିଏ ତାକୁ ବଢ଼ାଇଛି ନିତି ଦେଇ ଜଳ !
ମାଟିକୁ ହାଲୁକା କରେ ମାରି ମାରି ଫାଳ ||
କଢରୁ ବାହାରି ଫୁଲ ପଚାରଇ ହସି |
କିଏ ତୁମେ ଦେବୀ ଆମ ସେବା କର ଆସି ||
ଏ ଗଛ ଦେବକୀ ମାତା ଜନମ ଦାୟିନୀ |
ତୁମେ ଗୋ ଜୀବନ ଦାତ୍ରୀ ଯଶୋଦା ଜନନୀ ||
ତୁମ ଦାନ ରଙ୍ଗ, ବାସ ଆମ ପୁଷ୍ପଦଳେ |
କୋଟି ପ୍ରଣିପାତ ଘେନ ତୁମ ପଦ ତଳେ ||
ଏଡ଼ିକି କୋମଳ କରି ଦେଇଛ ଫୁଟାଇ |
ଖରା ଟାଣ ହେଲେ ପୁଣି ନେଉଛ ଉଠାଇ ||
ଲୋଡ଼ା ନାହିଁ ଆମକୁ ଗୋ ଦେବତାର ଶିର |
ଆଉଁସି ଦିଅ ଗୋ ଟିକେ, ମାରି ଦିଅ କର ||
ତୁମ ପାଦ ଧୁଆ ପାଣି ଦିଅ ଆମ ଶିରେ |
ଏ ଜୀବନ ଧନ୍ୟ ହେବ ଅଳପ ଆୟୁରେ ||

## ଇଏ କି କୁଣ୍ଡିଆ ରୋଗ 62

ଯେତେ ରାମ୍ପି ଯାଉଥିବ
ସେତେ ମଜା ପାଉଥିବ

ଛିଣ୍ଡି ପଛେ ଯାଉ ଚମ
କୁଣ୍ଡାଇ କୁଣ୍ଡାଇ ।
ଆମ ଘର ପଖ ହାଟେ
କଣ୍ଡୁ-ଲେପ ବିକାଳିଟେ
ଡାକି ବିକେ ତା ମଲମ
ମୁଣ୍ଡାଇ ମୁଣ୍ଡାଇ ।। -୧
ଏତେକ କୁଣ୍ଡିଆ ରୋଗୀ
ପଥ୍ୟକୁ ଅଛନ୍ତି ଜଗି
ଦେଖି ମନ ଗଲା ମୋର
ଭାବନାରେ ବୁଡି ।
ଆଉ କି ବା ଅଛି ବ୍ୟାଧି
ଯା ଲାଗି ଲୋଡ଼ା ଔଷଧି,
କି ଅଛି ତା ଉପଚାର --
ଏହି କଥା ଭାବି ।। -୨
ପଚାରିଲି ଯେବେ -- ଭାଇ
ଆଉ କିଛି ରୋଗ ପାଇଁ
ତୁମଠି ଅଛି କି ନାହିଁ
ଅ ଉଷଧି ବୁଟି ।
ତାହାଠୁ ଇସାରା ପାଇ
କହିଲି ତା କାନେ ଯାଇ
ମୋ ମନେ ଯା' ହେଉଥିଲା
ଆଉଟି ପାଉଟି ।। -୩

କାମ, କ୍ରୋଧ, ତହୁଁ ହିଂସା,
ହିଂସାଠାରୁ ପ୍ରତିହିଂସା:
ତିନେ ତାକୁ ଦେଲେ ସାଥ
ବଢ଼ି ଚାଲି ଥାଏ ।
କ୍ରୋଧ କଲେ ଇଚ୍ଛା ହୁଏ,
ବଢ଼ି ଚାଲି ଥାଉ ସିଏ,

ରାଗୁଥିବି, ବୁଝିବ ତ
ଏ ମନ ଟିକିଏ ||          -୪

କ୍ରୋଧ ପାଇଁ ଥିଲେ ଦିଅ
ଯେତେ ବି ପ ଇସା ନିଅ,
ବାଣ୍ଟିବି ସାହି ସଙ୍ଗାତ
ପରିବାର ଜନେ |
କହୁଛି ବ ଇଦ ପିଲା
ଅଦ୍ଭୁତ ଏ ରୋଗ ଭଲା
ଭଲ କାହୁଁ କରି ଦେବ
ଅଉଷଧ ପାନେ ? || -୫

ପିତା, ମତା, ଗୁରୁ, ଦେବ
ପାଖେ ଯଦି ମନ ଥିବ,
ଥିଲେ ବିନୟ ସ୍ୱଭାବ
ହେବ ଉପଚାର |
ଯେତେ କ୍ରୋଧ ଉଦ୍‌ଗାରିବ
ସେତେ ସେ ବଢ଼ି ଚାଲିବ;
ମୂଳୁଁ କର ପରିହାର
ଗର୍ବ ଅହଂକାର ||          -୬

## ମୂଷକ ଗଗନ ଲଙ୍ଘେ ବିହଙ୍ଗ ଉତ୍ସଙ୍ଗେ          63



ଅମ୍ବରେ ବିହଗ ପରେ ମୂଷିକ ଆରୋହୀ;

ଏକ ଆନେ ଛାଡ଼ି କ୍ଷଣେ ନ ପାରନ୍ତି ରହି || -୧
ଦୁଇ ସାଥୀ ମିଳି ମିଶି ଖୋଜନ୍ତି ଆହାର;
ଖାଦ୍ୟ ଖୋଜି ଯାଆନ୍ତି ସେ ଦୁହେଁ ବହୁ ଦୂର ||-୨
ପକ୍ଷୀର ଲାଗିଛି ଡେଣା ଉଡ଼ି ଯାଏ ଦୂରେ,
ଇନ୍ଦୂର ବି ଯାଏ ଉଡ଼ି ବସି ତା ପିଠିରେ || -୩
ସାଥୀରେ ଧାନ୍ୟାରି ଥିଲେ ପ୍ରଫୁଲ୍ଲ ବିହଗ;
ଶସ୍ୟ କାଟି ମାଟି ତଳେ ପକାଏ ତା ସାଙ୍ଗ || -୪
ଅଚଳା କୋଳୁ କଳାୟ କାଢ଼େ ବିଳକାରୀ;
ଖାଆନ୍ତି ଏକତ୍ର ଦୁହେଁ ମନ ଖୁସି କରି || -୫
କାହଳ ଲୁଣ୍ଠକ ଯେବେ ଲୁଚି ଲୁଚି ଆସେ,
ପିଙ୍ଗ ସାଥେ ବିହଙ୍ଗମ ଉଡ଼େ ଉଚ୍ଚାକାଶେ || -୬
ସାଙ୍ଗ ସାଥୀ ମିଳି ପିଲେ ଲଗାଇଲେ ମନ
କରିବ ଏ ଭଳି କେତେ ଅସାଧ୍ୟ ସାଧନ || -୭

## କିଏ ସେ ତୁମେ ନିଜେ ? 64

ବିଚାରି ଦେଖ ଥରେ ନିଜେ କିଏ ସେ ??....
ଭାଗ୍ୟକୁ ଧିକ୍କାରି କଥା କହନ୍ତି ଜନେ;
ନିଜ ସାଧନା କେତେ ନ ଭାଳି ମନେ || -୧
କହନ୍ତି, "କେହି ନୁହଁ ଆନ ସକାଶେ";
ନିଜେ ସ୍ୱାର୍ଥର ଭୃତ୍ୟ ରାତି ଦିବସେ || -୨
ବିଚାରି ଦେଖିଛ କି ନିଜେ କିଏ ସେ ??
ପଳାୟନ କାମନା ସଂସାର କ୍ଲେଷୁ,
ସତ୍ୟକୁ ଡରି ନିତ୍ୟ ବୁହାନ୍ତି ଅଶ୍ରୁ || -୩
ସତ୍ୟକି ହୁଏ ଭିନ୍ନ ଲୁଚିଲେ ରୋଷେ ?
ମାର୍ଜାର ଗବୀରସ ଯେ ଭାବେ ଶୋଷେ || -୪
ବିଚାରି ଦେଖ ଥରେ ନିଜେ କିଏ ସେ ?? ....
ବଦଳେ ନାମ, ରୂପ, ବଦଳେ ଧର୍ମ;
ବଦଳେ ନାହିଁ ମାତ୍ର ସ୍ୱଭାବ, କର୍ମ || -୫

ଅସ୍ମିତା, ରାଗ, ଦ୍ବେଷ, ଅଭିନେବେଶେ
ମଜ୍ଜି ମାତ୍ସର୍ଯ୍ୟେ ମଗ୍ନ ତୃଷ୍ଣା ନିବାସେ ||-୬
ଆତ୍ମଚିନ୍ତନ ଲାଗି କାହିଁ ନିମିଷେ,
ଜାଣିବ କାହୁଁ ତେବେ ନିଜେ କିଏ ସେ ??
ବିଚାରି ଦେଖ ଥରେ ....

## କଥା ଦେଇ କଥା ରଖିଲୁ ନାହିଁ ତୁ 65

କହିଲୁ ସୁନ୍ଦର-- ଫୋନ୍‌ରେ କବିତା ଲେଖା ଶିଖେଇବୁ ବୋଲି;
କିନ୍ତୁ ତୋ ଫୋନ୍‌ଟି ସୁଇଚ୍-ଅଫ୍ ତୋତେ ଯେତେବେଳେ ବି ଡାକିଲି |
ଝିଅ -- ତୋ ପାଖେ ମୁଁ ହାରି ଗଲି,
ତୋ ଜ୍ଞାନରୁ ଟିକେ ମୋତେ ଦେବୁ ବୋଲି ବୃଥା କିଆଁ ଆଶା କଲି || -1

"ଶରଧା ସୁମନ" କି ସୁନ୍ଦର ନାମ, ମନରେ ନାହିଁ ଶରଧା;
ଗୀତ ପଦେ ମୋର ପୁରା କଲୁ ନାହିଁ ସେ ଗୀତ ରହିଲା ଅଧା ||-2

କଥା ଦେଇ କଥା ରଖିଲୁ ନାହିଁ ତୁ ବିତିଗଲା ତିନି ମାସ;
ତୋ ମୁହହଁକୁ ଚାହିଁ ଲେଖା ଗଲା ରହି କବିତା ହେଲାନି ଶେଷ ||-3

ସୁନ୍ଦରୀ ଝିଅ ତୁ ଶୁଣିଅଛି କାନେ ଦେଖି ନାହିଁ ନୟନରେ;
ଏଡ଼ିକି ନିର୍ଦ୍ଦୟ ଜାଣି ହେବନି ତୋ ମଧୁ ବୋଳା ବଚନରେ ||-4

ଆଜି ଅବା କାଲି ବେଳ ଗଲେ ପୁରି ଯିବି ଏ ଜଗତ ଛାଡ଼ି;
ଅଧୁରା ଥିବ କି ସେ ଗୀତ ମୋହର, ଲେଖି ଦେବୁ ଗୋଟେ ଧାଡ଼ି ?-5

ତୋହ ପରି ମୁଁ ତ କବି ନୁହେଁ କନ୍ୟା, କି ଲାଗି ମନ ମୁଁ କଲି;
ପଦଟେ କବିତା ଲେଖି ଦେଇ ମୁଁ ବି କବି ପାଲଟିବି ବୋଲି ! -6

କବି ହେବା ପାଇଁ ଭାଗ୍ୟ ମୋର କାହିଁ, ଅଭ୍ୟାସ କରୁଛି ଲେଖା,
ଶ୍ରଦ୍ଧା ସୁମନ ତୁ ଶିଖାଇ ଦେ, ମୋର ଫିଟିଯାଉ ଭାଗ୍ୟ ରେଖା ||-7

ମୋତେ ଦେଲୁ ଦୁଃଖ, ମୁଁ ସିନା ସହିଲି ଛାତିକୁ ପଥର କରି,

ଆଉ କିଏ ହେଲେ ହାରିବ ଜୀବନ କଷଣ ସହି ନ ପାରି || -୫

ଅପର କାହକୁ ବଚନ ଦେଇ ତୁ କରିବୁନି ଆଉ ପର;
କଥା ଦେଇ କଥା ନ ରଖିଲେ ବ୍ୟଥା ସହିବା ବଡ଼ ଦୁଷ୍କର ||
ଆରେ-- ମୋତେ ପଛେ କହ ପର,
ସଭିଏଁ ମୋ ଭଳି ମନ୍ଦ ନୁହଁ ବାଳୀ, କିଏ ତ ଥିବେ ନିଜର || -୬

## ଘାସଫୁଲ 66

ବହୁ ଚର୍ଚ୍ଚିତ ଦେଲି ପାରିଜାତ ତାହାକୁ ତୁମେ ତ ଚିହ୍ନି ପାରିଲ ନାହିଁ |
କେମିତି ପ୍ରତୀତି ହେବ ତୁମ ବତୀ ସଳିତାରୁ ତିଳେ ବହ୍ନି ଜାଳିଲ ନାହିଁ | ୧
ଆଖି-ଉଚ୍ଛଳ ଅଶ୍ରୁର ଜଳ ଢାଳି ଚଞ୍ଚଳ ତୁମ ଆଶ୍ୱାସ ଆଶେ |
ପାଦ ଚାଳି ଚାଳି ଗଲି ଗଳି ଗଳି ଉଥଳି ପୁଥଳି ବୁଲି ବୁଲି ଦେଶେ ଦେଶେ |୨
ଆଉ କିଛି କାହିଁ ଦେଖିଲି ତ ନାହିଁ ଅରପିବା ପାଇଁ ବିସ୍ମୟ ଦେବା ପରି |
ମନନ କ୍ଳାନ୍ତି ଶରୀର ଶ୍ରାନ୍ତି ମତିର ଭ୍ରାନ୍ତି ଧରି ଆସୁଥିଲି ଫେରି |୩
ବୁଝିଲାନି ମନ ମାୟା-ବନ୍ଧନ ଭିତରେ ଶୂନ୍ୟ- ହାତରେ ମିଳନ ମୂଲ |
ସାତ ଶରଧାରେ ସାଉଁଟି ଆଣିଛି ଶତ ଶତ ଘେନ
ଶୁଭ୍ର-ଦଶନ
ବାସହୀନ ଏଇ ହସ ହସ ଘାସ ଫୁଲ |୪
ଏବେ ସେଇଥିରେ ଛୋଟ ମୋ ପୋଥିରେ ଗୁନ୍ଥି ଦେବି ଗୋ ପ୍ରୀତିଭରା ଗୀତି ହାର |
ପାରିଜାତ ଆଉ ଖୋଜିବି କିଆଁ ମୁଁ ଆଦରିଲେ ତୁମେ ଛୋଟ ଏଇ ଉପହାର |୫

## ଏଡ଼ିକି ଛୋଟିଆ ଝିଅ 67

ଏଡ଼େ ତୁ ଛୋଟିଆ, ଗୋଟିଏ ତକିଆ
ପଛରେ ଯାଉଛୁ ଲୁଚି;
କେମିତିକା ପୁଣି ଜିଦ୍ କରିଛୁ –
ଉଠିଲେ ଖେଳିବୁ ପୁଚି ?-୧

କଅଁଳ କଅଁଳ ହାତ ଗୋଡ଼ ତୋର
ଆହୁରି କ'ଅଁଳ ଓଠ,
ଛୋଟିଆ ଚାମୁଚ ପାଟିରେ ଗଳୁନି,
କେମିତି ପଢ଼ିବୁ ପାଠ ?-୨

କଣ୍ଡେଇଟା ହାତେ ଧରି ତୁ ପାରୁନୁ
କଚାଡୁ ଥରକୁ ଥର;
ବ୍ଲେଡ୍ ମାଗୁଛୁ ପେନ୍‌ସିଲ୍ କାଟିବୁ –
ଭାବିଲେ ମାଡୁଚି ଡର ||-୩

ରିମୋଟ ଧରିବୁ ମୋବାଇଲ୍ ନେବୁ
ଚିପି ଦେବୁ ଏଠି ସେଠି,
ଟିଭି  ଦେଖି ଦେଖି ନାଚିବୁ ବୋଲି ତୁ
ଭୂଇଁରେ ପଡୁଛୁ ଲୋଟି ||-୪

ପାଠ ପଢ଼ି କେବେ ବଡ଼ ହେବୁ ତୁ ରେ,
ଚାକିରି କରିବୁ କେବେ,
ଖୋଇ ନ ଦେଲେ ତୁ ଖାଇ ପାରିବୁନି
ମା ଖୋଇ ଦେଉ ଥିବେ ?-୫

ହଷ୍ଟେଲ୍‌କୁ ଯିବୁ ନିଜ ଲୁଗା ପଟା
କାଚିବୁ  କି ନିଜ ହାତେ ?
ଶୁଖିଲା ଭୂଇଁରେ ପଡୁ ତୁ, ଖସିବୁ
ସାବୁନ୍ ପାଣିରେ କେତେ ?-୬

ମୋଜା ପିନ୍ଧେଇଲେ ଖସେ ଦଶଥର
ପିନ୍ଧିବୁ ଗହଣା ଶାଢ଼ି,
ଘୋଡ଼ି ଘାଡ଼ି ହେଇ ବୋହୂ ବେଶେ ଆମ

ଜୋଇଁ ସାଙ୍ଗେ ଯିବୁ ଉଡ଼ି ||-୭

ଏତେ ଶରଧାରେ ବଢ଼ଉଛି ତୋତେ
କରି ଯିବୁ ସାତ ପର;
ମୁଁ ସିନା ସମ୍ଭାଳି ରହି ଯିବି, କାନ୍ଦି
ମାଆ ମରିଯିବ ତୋର ||-୮

ଏମିତି ଦୁନିଆଁ କିଏ ସେ ଗଢ଼ିଲା
ବୁଦ୍ଧି ଶୁଦ୍ଧି ତାର ନାହିଁ,
ଏତେ ତୁ ନିଜର ଯିବୁ ପର ଘର
ଆମେ ଥିବା ବାଟ ଚାହିଁ ||-୯

## ବନ୍ଦ୍ କର ତୁମ କ୍ରିକେଟ୍ ଖେଳ 68

ବନ୍ଦ୍ କର ବନ୍ଦ୍ କର ଏବେ କ୍ରିକେଟ୍ ଖେଳ;
ସେ ଖେଳ ପାଇଁ
ବାଇୟା ହେଇ ବାସ୍ ଟେଣ୍ଡିରୁ ବଜାର ଯାଇ
କରୁଛ କେତେ ଗୋଳ;
କାହାକୁ ଗାଳି କାହାକୁ ତାଳି,
ରେଡିଓ ଭାଙ୍ଗି ଟିଭି କଟାଡ଼ି, ଫୋଟକା ଧରି ଲାଇଟ୍ ଜାଳି
ଚାଲିଛି ପାଟି ଝଗଡ଼ା ଝାଟି ଜିତାଇ ଦେବ ଦେଶକୁ ବୋଲି
କରୁଛ କେତେ ଆଳ || -୧

ଛୋଟିଆ ଗୋଟେ ପେଣ୍ଡୁ ଧରି ଦୁଇ ଦେଶରେ କେତେ ବଇରୀ
ମନ୍ଦ ଇଚ୍ଛା ମନ୍ଦ ଭାଷା- ପ୍ରତିଯିଗୀତା ଜିତିବା ଆଶା;
କି ଅବା ଖେଳ ସିଏ ?
ବିରାଟ ଆମ ଆକାଶେ ଦେଖ
ପେଣ୍ଡୁ ଖେଳେ କିଏ !! -୨

ଅଗ୍ନି ପିଣ୍ଡ ଗୋଟାକୁ ଗୋଟା ସଜାଇ ଧାଡ଼ି ଧାଡ଼ି;
ସନ୍ଧ୍ୟା ହେଲେ ଟାଙ୍ଗି ଦିଏ ଲିଟୁ ଲାଇଟ୍ କରି;

ସକାଳ ହେଲେ ଖୋଲି ସେ ତାକୁ
କୁଆଡ଼େ ଲୁଚେଇ ଦିଏ ?? -୩
ହେଉ ସେ ରାତି ହେଉ ଦିବସ,
ଦିଶେନା ସିଏ କେବେ,
ଧକ୍କା ମାରି ପୃଥିବୀ ପରି ନିଆଁ ପିଣ୍ଡୁଳା ଦୂରେ ଫୋପାଡ଼ି
ଖଣ୍ଡ କରେ, ଗୁଣ୍ଡ କରେ, ଯାଏନା ଥକି ଲବେ;
ଚଉକା ଛକ୍କା ମାରେନା ସିଏ
ଛୋଟ ଗାର ଟାଣି;

ପଡ଼ିଆର ତା ଅନ୍ତ ନାହିଁ;
ଏଡ଼େଟେ ଗାର ଟାଣିବା ପାଇଁ
କିଏ ବା ଅଛି କାହିଁ ??-୪

କନ୍ଦୁକ ତା' ପଡ଼ିଲେ ଖସି କ୍ରିକେଟ ଭୂଇଁ ଛାଡ଼;
ପୃଥିବୀ ସାରା ନିଆଁରେ ଧସି ଧୂଆଁରେ ମିଶି ଦିଶିବ ନାହିଁ
କାହା ମାଉଁସ ହାଡ଼ ||
ମହାକାଳର ସେ ଖେଳ ଦେଖ କ୍ରିକେଟ୍ କଳି ଛାଡ଼ ||-୫

## ଧଣ୍ଡାମୁଣ୍ଡା ଧର୍ମଧାମ 69

ଧଣ୍ଡାମୁଣ୍ଡା ଧୂଳି ଧୂସର ଧରା ଧରମ ଧାମେ
ଜରାଜୀର୍ଣ୍ଣା ଯତୀଜନନୀ ଜୀଏ ଜପ-ଜାପନେ | -୧
ଜୀବନ ଯାକର ଯାତନା ଯମନିୟମେ ହଜେ;
ପ୍ରସନ୍ନ ପରାଣେ ପରମ ପଦପୟୋଜ ପୂଜେ | -୨
ନିବର୍ଣ୍ଣ ନୟନ ନିସତ କର୍ଣ୍ଣ ରସନ ନାସା;
ଶ୍ୱେତବସ୍ତ୍ରା ସାଧ୍ୱୀ ସାଧନେ ସଦା ସତ୍ୟପିପାସା | -୩
ଅତିଥି ଆଗମେ ଆନନ୍ଦ ଆସ୍ୟେ ଉଠେ ଉକୁଟି;
ପୁତ୍ର ପୁତ୍ରୀ ପ୍ରାୟ ପରାଣୁ ପ୍ରୀତି ସ୍ବରେ ପ୍ରକଟି | -୪
ବିଶ୍ରମିଲେ ବାରେ ବିବାସେ ବିପ୍ରା ବିଦୁଷୀ ବାସ,
ବିଷାଦବିଦ୍ରୁତ ବିରାଗୀ ବର୍ଜେ ବିରସ ଭାଷ | -୫

## ସାହସୀ ମେଷ ଶିଶୁ ଦେଖିବ ଆସ 70



ଦେଖିବ ଦେଖିବ ଆସ        କେତେ ତାର ଦୁଃସାହସ
ଯେ କାର୍ଯ୍ୟ ଡରେ ମଣିଷ ସେ ପାରେ କରି;
ନ ଥାଉ ପାଞ୍ଚ ଆଙ୍ଗୁଠି        ପର୍ବତ ଶିଖରେ ଉଠି
ଖରାକୁ ଦେଖାଏ ପିଠି କି ଦର୍ପ ଭରେ;
ମାଗେନା ପଦକ, ସମ୍ମାନ;
ଆନନ୍ଦେ ସେ ଭରିଦିଏ ଦର୍ଶକ ମନ || -୧
ବନ୍ୟପଶୁ ମେଷଛୁଆ        ବିଦ୍ୟାହୀନ ନିର୍ବୁଦ୍ଧିଆ
ମରଣ ବେଦୀରେ ଠିଆ ନାହିଁ ଶୋଚନା;
ସେ କି କେବେ ଥରେ ଭାଳେ   ହେବ ଗୋଡ଼ ଖସିଲେ
କଚାଡ଼ାଟେ ଖାଇ ତଳେ ଭାଜିବ ହାଡ଼;
ମା କାନ୍ଦେ ନ ପାଇ ଖୋଜି
କେଉଁ ଦେଶେ ଗଲା ପୁତ୍ର, କି ହେଲା ଆଜି || -୨
ସୁନିର୍ମଳ ନଭତଳ        ତା ତଳେ ଜଳଦମାଳ
ସେ ଭିତରେ ରଚେ ଖେଳ ମେଷ ଶାବକ;
ତଳେ ସରିତ ସୈକତ        ଶୈଳଖଣ୍ଡ ଭୂଲୁଣ୍ଠିତ
ମହୀରୁହ କଣ୍ଟକିତ, ନାହିଁ ତା' ଦକ;
ଖୋଜେନା ସେ ଭଗିନୀ ଭାଇ
ମାତା ପିତା ସାଙ୍ଗ ସାଥୀ ସଙ୍ଗାତ ସହି || -୩

## ନିଦାଘରେ କାହିଁ ତାତି 71

ନିଦାଘରେ କାହିଁ ତାତି,        ପାରାବାରେ କି ବା ନୀର,

ଜର୍ଜର ଜଳିଲେ ଛାତି, ଝର୍ଝର ଝରିଲେ ଲୋତ୍ର ?-୧
କି ଉତ୍ତାଳ ନଭ ତଳ, ପାତାଳ କି ବା ଅତଳ,
ଉଚ୍ଚଳ ହେଲେ ଉଚ୍ଛଳ, ବ୍ୟାକୁଳ ଅନ୍ତରତଳ ?-୨
ଅଙ୍ଗାରେ କାଳିମା କି ବା, ଅମା ରାତି କି ଅନ୍ଧାର,
ଶ୍ରଦ୍ଧିତ ହେଲେ ଅରାତି, ଆପଣା ସାଜିଲେ ପର ?-୩

## ମଧୁର ଦଣ୍ଡକାମନା 72



ଶିକ୍ଷକ ପୟର ଧରି ବାରମ୍ବାର ଅଧ୍ୟେତା, ବିଦ୍ୟା-ଅର୍ଥିନୀ;
କହନ୍ତି ଏ ଦଣ୍ଡ ଆମ ପ୍ରାଣ ପିଣ୍ଡ, ହେଉ ଆମ ଦୈନନ୍ଦିନୀ ||-୧
ଦୁହେଁ ଏକ ଆନେ କହନ୍ତି ଗୋପନେ– ଦେବା ନାହିଁ ପ୍ରଶ୍ନୋତ୍ତର;
ଏ ଭଳି ଶାସନ ଲଭି ପ୍ରତିଦିନ ଆନନ୍ଦେ ଫେରିବା ଘର ||-୨
ହାଲୁକା ହାଲୁକା ଧରିଥିବା ଏକା ଏକ ଅପରର କାନ;
ଥକା ଲାଗି ଗଲେ ପଡ଼ିବା ଭୂତଳେ କରିନେବା ଆଲିଙ୍ଗନ ||-୩

## ଆସ ମୋର ସ୍ୱପ୍ନ 73

ଆସୁ ପଛେ ତନ୍ଦ୍ରାହୀନ ଘନ ଅନ୍ଧକାର;
ଲେଲିହାନ ଅଗ୍ନି ଶିଖା ଲାଗେ ଭୟଙ୍କର;
ଲିଭି ଯାଉ ଅନର୍ଥ ପ୍ରଦୀପ;
ଆସ ପ୍ରିୟତମ ମୋର ସ୍ୱପ୍ନ ଅପରୂପ ||-୧
କି ହିତେ ଜ୍ୟୋତି ଜ୍ୱଳତ ଦୟିତ ଅତ୍ୟୟେ;
ଗତାକ୍ଷେ କର୍ପର ଦାନ ଯଥା ଅପଚୟେ;
ନିର୍ମାର୍ଗ ପ୍ରଦେଶେ ଯଥା ଯାନ;

ଅରାଜକ ରାଜ୍ୟେ ଯଥା ବୃଥା ସିଂହାସନ ||- ୨

ଜ୍ୱଳତ୍= ଶିଖା; ଦୟିତ= ପତି, ପ୍ରେମିକ; ଅତ୍ୟୟ= ଅନୁପସ୍ଥିତି, ମୃତ୍ୟୁ; ଗତାକ୍ଷ୍= ଅନ୍ଧ; କର୍ପର= ଦର୍ପଣ; ନିର୍ମାର୍ଗ=ମାର୍ଗହୀନ

## ଦୋଷ କ୍ଷମା କର 74

ଦୋଷ କ୍ଷମା କର ଭଗ୍ନୀ ରାଣୀ ମୋର କି ଥିଲା କହ ଉପାୟ;
ବିଛେଦର ଭାଷା ଦିଶିଲା ସହସା; ସେ ଛବି ଥିଲା ଦୁଃସହ ||
ଉଣା କରି ବ୍ୟଥା ଲେଖିଲେ ହୁଅନ୍ତା ଅର୍ଦ୍ଧସତ୍ୟ ସମ୍ଭାଷଣ,
ଅର୍ଦ୍ଧସତ୍ୟ କଥା ଅବା ଅର୍ଦ୍ଧମିଥ୍ୟା ସମାନ, ଶାସ୍ତ୍ର-କଥନ ||
ସତ୍ୟ ଜାଣି ସତ୍ୟ ନ ଦେଲେ ବଖାଣି ସଭା ମଧ୍ୟେ ଲୋଡ଼ା ହେଲେ;
ସେହି ସତ୍ୟ-ଜ୍ଞାନ ଋଭସଠୁ ହୀନ – ଧର୍ମ କହେ କାଳେ କାଳେ ||
ଏଣୁ ଲେଖି ଦେଲି ଯାହା ମୁଁ ବୁଝିଲି; ଥୋଇ ଦେଲି ଏ କବିତା;
ମନ ହେଲେ ଉଣା କରିବ ମାର୍ଜନା ମହାମନା ସୁଖଲତା ||

## କୁନି ପୁଅ



ତୁମେ ବାପା ମୋର ସବୁବେଳେ ଲୋଡା -- କୁନି  ପୁଅ କରେ ଅଳି--
ଆଉ କିଏ ମୋତେ ଭୂଇଁରୁ ଉଠେଇ ଆକାଶେ ଧରିବ ଟେକି ? -୧-

ଘୋଡା ମୋର ହେଇ ପିଠିରେ ବସେଇ ଗୁରୁଣ୍ଡିବ ଧୀରେ ଧୀରେ
ଚୁଡକୁ ମୂଷିଟି କରୁଥିବ ନିତି ମୋ ହାତରେ ଥରେ ଥରେ || -୨-

ଆଙ୍ଗୁଳି ମୋ ଧରି ଧୀରେ ଧୀରେ କରି ଆଗକୁ ପକାଅ ପାଦ
ଥକିଯିବି ଯେବେ କାନ୍ଧରେ ଧରିବ, ଥାପୁଡିଲେ ଯିବି ନିଦ || -୩-

ବଡ ଯେବେ ହେବି ଇସ୍କୁଲ୍‌କୁ ଯିବି, ପଢିଯିବି ସବୁ ପାଠ
ଅଫିସିକୁ ଗଲେ ତୁମ ପାଇଁ ଲୁଗା, ମାଁ ପାଇଁ ଆଣିବି ପାଟ || -୪-

ଜୋତା ଛତା ସବୁ କିଣି ଆଣିଦେବି, ଜର ହେଲେ ଅଉଷଧ,
ତୁମ ପାଇଁ ଘଡି, ମାଁର ଶଙ୍ଖା ଚୁଡି, ପାଉଁଜି ମାପି ତା ପାଦ || -୫-

-----*ସମାପ୍ତ*----